# ଶ୍ରୀକୃଷ୍ଣ କ୍ରୀଡ଼ା

ରାଜକବି ଧନଞ୍ଜୟ ଭଞ୍ଜ କୃତ

# ଶ୍ରୀକୃଷ୍ଣ କ୍ରୀଡ଼ା
(ତାଳପତ୍ର ପୋଥିରୁ ସଂଗୃହୀତ)

ରଚନା :

ରାଜକବି ଧନଞ୍ଜୟ ଭଞ୍ଜ


ସଂଗ୍ରାହକ :

ଶ୍ରୀ ମାଗୁଣି ଦାଶ
ସ୍ୱାଧୀନତା ସଂଗ୍ରାମୀ
ସାମ୍ବାଦିକ
ଅବସରପ୍ରାପ୍ତ ଜିଲ୍ଲା ଲୋକସମ୍ପର୍କ ଅଧିକାରୀ



ପ୍ରକାଶକ :

କବିସମ୍ରାଟ ବୁକ୍ ଷ୍ଟୋର୍
ଭଞ୍ଜନଗର (ଗଞ୍ଜାମ)
୭୬୧୧୨୬

ପ୍ରଥମ ସଂସ୍କରଣ :

୧୯୮୭ ଅପ୍ରେଲ ପହିଲା

ମୁଦ୍ରାକର :

ଶ୍ରୀ ଗୋବିନ୍ଦ ବାରିକତା
କଳିଙ୍ଗ ପ୍ରେସ୍, ବ୍ରହ୍ମପୁର-୧

ମୂଲ୍ୟ—ପାଞ୍ଚ ଟଙ୍କା ମାତ୍ର

# ରଚନା ସମ୍ପର୍କରେ ପଦେ

ଶ୍ରୀକୃଷ୍ଣ ଲୀଳା କାବ୍ୟର ରଚୟିତା ରାଜକବି ଧନଞ୍ଜୟ ଭଞ୍ଜ ଘୁମୁସର ରାଜବଂଶରେ ପ୍ରତାପ ଧନଞ୍ଜୟ ଭଞ୍ଜ ନାମରେ ସୁପରିଚିତ । ସେ ୧୬୧୧ ମସିହାରେ ରାଜା ଗୋପୀନାଥ ଭଞ୍ଜ ଓ ରାଣୀ ଲୀଳାଦେଈଙ୍କ ଔରସରେ ଘୁମୁସରରେ ଜନ୍ମଗ୍ରହଣ କରିଥିଲେ ।

ଗୋପୀନାଥ ଭଞ୍ଜ ଜଣେ ପ୍ରବଳ ପ୍ରତାପୀ ରାଜା ଥିଲେ । ସେ ନିଜର ଜ୍ୟେଷ୍ଠ ଭ୍ରାତା ବନମାଳି ଭଞ୍ଜଙ୍କୁ ହତ୍ୟାକରି ୧୬୧୪ ମସିହାରେ ଘୁମୁସର ସିଂହାସନ ଅଧିକାର କରିଥିଲେ । ରାଜା ହେବା ପାଇଁ ସେ ଏତେବଡ଼ ଅନ୍ୟାୟ କାର୍ଯ୍ୟ କରିଥିଲେ ମଧ୍ୟ ସିଂହାସନ ଆରୋହଣ ପରେ ସେ ଜଣେ ପରମ ଧାର୍ମିକ, ପରୋପକାରୀ, ପ୍ରଜାବତ୍ସଳ, ଦୟାଳୁ ରାଜା ଭାବରେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ ।

ସେ ନିଜ ନାମରେ କୁଲାଡ଼ ଗଡ଼ ନିକଟରେ ଗୋପୀନାଥପୁର ନାମରେ ଗୋଟିଏ ଏବଂ ନିଜ ରାଣୀ ଲୀଳାଦେଈଙ୍କ ନାମରେ ଆଉ ଗୋଟିଏ ଏପରି ଦୁଇଟି ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି ଆବଶ୍ୟକୀୟ ଭୂସମ୍ପତ୍ତି ଦାନ କରିଥିଲେ ।

ଗୋପୀନାଥ ଭଞ୍ଜ ୨୨ ବର୍ଷ ରାଜତ୍ୱ କରିବା ପରେ ୧୬୩୬ ମସିହାରେ ଇହଲୀଳା ସମ୍ବରଣ କରିବାରୁ ଜ୍ୟେଷ୍ଠ ପୁତ୍ର ଧନଞ୍ଜୟ ଭଞ୍ଜ ଘୁମୁସରରେ ୫୦ ତମ ରାଜା ରୂପେ ସିଂହାସନ ଆରୋହଣ କରିଥିଲେ । ସେ ଏକାଧାରରେ ଜଣେ ବିଖ୍ୟାତ କବି, ଶାସକ, ପରମ ଧାର୍ମିକ, ଚତୁର, ସାହସୀ, ବୁଦ୍ଧିମାନ, ନ୍ୟାୟପରାୟଣ ଓ ଅତ୍ୟନ୍ତ ରସିକ ରାଜା ରୂପେ ସୁଖ୍ୟାତି ଲାଭ କରିଥିଲେ ।

ସାହିତ୍ୟ ଓ ସଙ୍ଗୀତ ଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ସାହିତ୍ୟ ଚର୍ଚ୍ଚାରେ ନିଜକୁ ମଜ୍ଜାଇ ରଖିବା ପାଇଁ ନିଜର କନିଷ୍ଠ ଭ୍ରାତା ଗୋବିନ୍ଦ ଭଞ୍ଜଙ୍କୁ ଥାଟରାଜା ପଦରେ ନିଯୁକ୍ତ କରି ରାଜ୍ୟ ଶାସନ ପରିଚାଳନାର ସମସ୍ତ ଭାର ତାଙ୍କ ଉପରେ ନ୍ୟସ୍ତ କରିଥିଲେ ।

ରାଜା ଧନଞ୍ଜୟ ପ୍ରାୟ ନବେ ବର୍ଷ ଜୀବିତ ଥିଲେ । ସେ ୧୬୩୬ ମସିହା ଠାରୁ ୧୭୦୧ ମସିହା ପର୍ଯ୍ୟନ୍ତ ଦୀର୍ଘ ୬୫ ବର୍ଷକାଳ ଅତ୍ୟନ୍ତ କୌଶଳ ଓ ଚତୁରତାର ସହିତ ଘୁମୁସର ପ୍ରଜାପୁଞ୍ଜଙ୍କୁ ପାଳନ

କରିଥିଲେ । ସେ ସତୁରି ହଜାର ଟଙ୍କା ବ୍ୟୟ କରି କୁଳଡ଼ାରେ ଗୋଟିଏ ସୁଦୃଢ଼ ଦୁର୍ଗ ନିର୍ମାଣ କରିଥିଲେ । ବହୁ ଅର୍ଥ ବ୍ୟୟ କରି ରାଜକୀୟ ଉପଭୋଗ ପାଇଁ ଖଟ, ଦୋଳି ଓ ବାର୍କିଆ ଇତ୍ୟାଦି ନିର୍ମାଣ କରାଇଥିଲେ । ସେ ନିଜ ନାମରେ କୁଳଡ଼ା ଗଡ଼ ନିକଟରେ ଧନଞ୍ଜୟପୁର ନାମରେ ଗୋଟିଏ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି ଆବଶ୍ୟକୀୟ ଭୂସମ୍ପତ୍ତି ଦାନ କରିଥିଲେ ।

ରାଜା ଧନଞ୍ଜୟ ରାଜତ ଘରୁ ଦୁଇଗୋଟି କନ୍ୟା, ଭୂରୁମୁ, ଧରାକୋଟ, ନୟାଗଡ଼, ଚନ୍ଦ୍ରପଡ଼ା ଓ ଖଲିକୋଟ ରାଜା ପରିବାରରୁ ଗୋଟିଏ ଗୋଟିଏ କରି ଏପରି ସାତଟି କନ୍ୟା ବିବାହ କରିଥିଲେ । ଏହାଛଡ଼ା ଗାନ୍ଧର୍ବ ବିଦ୍ୟାରେ ପ୍ରବୀଣା ପାଞ୍ଚଟି ଅନ୍ତର ସ୍ତ୍ରୀ ମଧ୍ୟ ରଖିଥିଲେ ।

ତାଙ୍କର ଏକାଧିକ ରାଣୀଙ୍କ ଗର୍ଭରୁ ବାରଟି ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲେ । ନୁଆଁଗଡ଼ ରାଜଜେମା ମଣ୍ଡୋଦେବୀ ଧନଞ୍ଜୟ ଭଞ୍ଜଙ୍କର ପାଟ ମହିଷୀ ନ ଥିଲେ ମଧ୍ୟ ପ୍ରିୟତମା ପତ୍ନୀ ଥିଲେ । ତାଙ୍କ ଗର୍ଭରୁ ନୀଳକଣ୍ଠ ଭଞ୍ଜ (ଉପେନ୍ଦ୍ର ଭଞ୍ଜଙ୍କ ପିତା) ଜନ୍ମଲାଭ କରିଥିଲେ । ଧନଞ୍ଜୟ ଭଞ୍ଜଙ୍କ ପରେ ତାଙ୍କ ପାଟ ମହିଷୀ ରଜତଯଳ କନ୍ୟାଙ୍କ ପୁତ୍ର ଗଙ୍ଗାଧର ପାଟକୁମାର ଥାଉ ଥାଉ ନୀଳକଣ୍ଠ ଭଞ୍ଜଙ୍କୁ ରାଜସିଂହାସନରେ ଅଧିଷ୍ଠିତ କରିବା ପାଇଁ ରୂପସୀ ପ୍ରେୟସୀ ମଣ୍ଡୋଦେବୀଙ୍କ ସନିର୍ବନ୍ଧ ଅନୁରୋଧ ବୃଦ୍ଧ ଧନଞ୍ଜୟଙ୍କ ହୃଦୟକୁ ଆନ୍ଦୋଳିତ କରିଥିଲା । ମାତ୍ର ତାଙ୍କର ବିଚାରଶୀଳ ମନ ଅପବାଦ ହେବା ଭୟରେ ଅନୁମୋଦନ କରି ନ ଥିଲା ।

ଅଜ୍ଞାତ ଅଶ୍ବସ୍ଥାମାଙ୍କର "ଧନିଆଁ ପରେ ଘନିଆଁ ରାଜା ହେବ" ଏକ'ଦୃଶ୍ୟ ଭବିଷ୍ୟତ୍ ବାଣୀ ପୁଣି ତାଙ୍କୁ ଅସ୍ଥିର, ବିବ୍ରତ ଓ ବିଷାଦଗ୍ରସ୍ତ କରିଦେଇଥିଲା । ଏପରି ଅନପେକ୍ଷିତ ଚିନ୍ତାର ଦ୍ୱନ୍ଦ୍ୱ ଘୂର୍ଣ୍ଣିୟାବର୍ତ୍ତରେ କୌଣସି ନିଷ୍ପତ୍ତି ନେବାକୁ ବୃଦ୍ଧ ଧନଞ୍ଜୟ ଅସହାୟ ଓ ଅସମର୍ଥ ହୋଇ ପଡ଼ିଥିଲେ ସତ କିନ୍ତୁ ପ୍ରିୟତମା ମଣ୍ଡୋଦେବୀଙ୍କ ଚାଟୁକାର କଥାରେ ଭୁଲିଯାଇ ଭ୍ରାତୃଷ୍ପୁତ୍ରମାନଙ୍କୁ ରାଜ୍ୟରୁ ବିତାଡ଼ିତ କରିଦେଇଥିଲେ । ଇତ୍ୟବସରରେ ରାଜମାତାର ଗୌରବ-କାଂକ୍ଷିଣୀ ମଣ୍ଡୋଦେବୀ ନିଜର ବିଶ୍ୱସ୍ତ ରନ୍ଧଣୀ ବ୍ରାହ୍ମଣୀ ଦ୍ୱାରା ବୃଦ୍ଧ ଧନଞ୍ଜୟଙ୍କୁ ଖାଦ୍ୟରେ ବିଷ ପ୍ରୟୋଗ କରାଇ ଧନଞ୍ଜୟଙ୍କର ମୃତ୍ୟୁ ଘଟାଇଥିଲେ ।

ଏହି ଅପ୍ରତ୍ୟାଶିତ ପରିସ୍ଥିତିରେ ସୁଯୋଗ ନେଇ ମାଳକଣ୍ଠ ଭଞ୍ଜ (ଉପେନ୍ଦ୍ରଭଞ୍ଜଙ୍କ ପିତା) ବଳପୂର୍ବକ ଘୁମୁସର ସିଂହାସନ ଆରୋହଣ କଲେ ଏବଂ ପାଟକୁମାର ଗଙ୍ଗାଧର ଭଞ୍ଜ ଏବଂ ତାଙ୍କ ପୁତ୍ର ଶତ୍ରୁଞ୍ଜୟ ଭଞ୍ଜ, ଉତ୍ତରାଧିକାର ସୂତ୍ରରେ ଭବିଷ୍ୟତରେ କାଳେ ରାଜଗାଦି ପାଇଁ ଦାବି ଉପସ୍ଥାପିତ କରିବେ ଏହି ଆଶଙ୍କାରେ ବାପ ଓ ପୁଅ ଦୁହିଁଙ୍କୁ ହତ୍ୟାକରି ଶତ୍ରୁଞ୍ଜୟ ଭଞ୍ଜଙ୍କ ଗର୍ଭବତୀ ସ୍ତ୍ରୀଙ୍କୁ ବନ୍ଦୀକରି ନିଷ୍କଣ୍ଟକମଣି ରାଜ୍ୟ ଶାସନ କଲେ । ନୃଶଂସ ମାଳକଣ୍ଠ ଭଞ୍ଜ ଏପରି ଅସ୍ଥିର ବାତାବରଣ ମଧ୍ୟରେ ମାତ୍ର ତିନିବର୍ଷ ରାଜା ହୋଇଥିଲେ । ନିର୍ବାସିତ ଘନ ଭଞ୍ଜ ରାଜ୍ୟର କେତେ ପ୍ରଜାମାନଙ୍କୁ ମେଳକରି ପ୍ରବଳ ଷଡ଼ଯନ୍ତ୍ର କରିବାରୁ ମାଳକଣ୍ଠ ଭଞ୍ଜ ଘୁମୁସର ତ୍ୟାଗ କରି ନୟାଗଡ଼ ମାଳ ସାହିରେ ଯାଇ ପୁତ୍ର ଉପେନ୍ଦ୍ରଙ୍କ ସହିତ ବାସ କଲେ ।

ଉପେନ୍ଦ୍ର ଭଞ୍ଜ ଷଡ଼ଯନ୍ତ୍ରର ଶିକାର ନ ହୋଇ ରାଜଗାଦି ପ୍ରତି ବୀତସ୍ପୃହ ହୋଇ ସାରସ୍ୱତ ରାଜ୍ୟର ରାଜଚକ୍ରବର୍ତ୍ତୀ ହେଲେ ଏବଂ 'କବି ସମ୍ରାଟ' ଭାବରେ ଓଡ଼ିଆ ସାହିତ୍ୟ ରାଜ୍ୟରେ ସୁପରିଚିତ ହେଲେ ।

ଧନଞ୍ଜୟ ଭଞ୍ଜ ଗାନ୍ଧର୍ବ ବିଦ୍ୟାରେ ଧୁରନ୍ଧର ଥିଲେ । ସଙ୍ଗୀତ ଶାସ୍ତ୍ରରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ସେ ଜଣେ ଅତ୍ୟନ୍ତ ରସିକ ରାଜା ଭାବରେ ପରିଚିତ ଥିଲେ । 'ଭଞ୍ଜ ବଂଶାନୁଚରିତ'ରେ ଲେଖାଅଛି—

ଧନଞ୍ଜୟ ଭଞ୍ଜ ତାଙ୍କର ସୁତ ଥିଲେ ।
ତଦନନ୍ତରେ ସେହୁ ରାଜ୍ୟକୁ କଲେ ।।

× × ×

ସଙ୍ଗୀତ ବିଦ୍ୟାରେ ଅତ୍ୟନ୍ତ ଧୁରନ୍ଧର ।
ଗୀତ କବିତ୍ୱ କରି ପାରନ୍ତି ମଧୁର ।।

× × ×

ବୀଣା ସିତାର ପରା ଖଞ୍ଜଣୀ ଆଦି ଯେତେ ।
ପୁଣି ପୁଡ଼ା ବାଦ୍ୟ ବାଜଣା ଜଣା ତେତେ ।।

ବାହାରେ ସାତକୋଡ଼ି ଗୁଣ୍ଡ ଗଣି ରଖିଥାନ୍ତି ।
ଭିତରେ ସାତକୋଡ଼ି ନାଚୁଣୀ ନାଚନ୍ତି ।।

× × ×

ଜନ୍ମର ସ୍ତ୍ରୀ ସଜବଣ ନାଗଙ୍କର ।
ସ୍ତନରେ ମର୍ଦ୍ଦନ କରନ୍ତି ଶରୀର ।

(ଭଞ୍ଜ ବଂଶାନୁଚରିତ ୧୯ ପୃଷ୍ଠା)

ଧନଞ୍ଜୟ ଭଞ୍ଜଙ୍କୁ ଓଡ଼ିଆ ସାହିତ୍ୟର ଭଞ୍ଜଯୁଗର ପ୍ରବର୍ତ୍ତକ ବୋଲି କୁହାଯାଏ । ସେ ଅନେକ ଗୁଡ଼ିଏ କାବ୍ୟ କବିତା ରଚନା କରିଅଛନ୍ତି । ତାଙ୍କ ରଚିତ କାବ୍ୟମାନଙ୍କ ମଧ୍ୟରେ ରଘୁନାଥ ବିଳାସ ବା ଶ୍ରୀରାମ ବିଳାସ କାବ୍ୟଟି ଗୋଟିଏ ଉତ୍କୃଷ୍ଟ କାବ୍ୟ । ଏହି କାବ୍ୟ ଅବଲମ୍ବନରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜର ବୈଦେହୀଶ ବିଳାସ ମହାକାବ୍ୟ ରଚନା କରିଥିବା ପ୍ରବାଦ ଅଛି । ରଘୁନାଥ ବିଳାସ ବହିଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । ଏ ପର୍ଯ୍ୟନ୍ତ ଧନଞ୍ଜୟ ଭଞ୍ଜଙ୍କର ମଦନମଞ୍ଜରୀ, ଇଚ୍ଛାବତୀ ଓ ଅନଙ୍ଗରେଖା ଏହି ତିନିଗୋଟି କାବ୍ୟ ପ୍ରକାଶ ପାଇଛି ମାତ୍ର ।

ଧନଞ୍ଜୟ ଭଞ୍ଜଙ୍କ ରଚିତ ଗ୍ରନ୍ଥ ଗୁଡ଼ିକୁ ନିମ୍ନଲିଖିତ ବିଭାଗରେ ପ୍ରଦର୍ଶନ କରାଯାଇ ପାରେ ।

ପୌରାଣିକ— ୧ । ରଘୁନାଥ ବିଳାସ ବା ଶ୍ରୀରାମ ବିଳାସ ।
(ରାମ ଚରିତ ବିଷୟକ)

୨ । ଶ୍ରୀକୃଷ୍ଣ ଲୀଳା (କୃଷ୍ଣ ଚରିତ ବିଷୟକ)

କାଳ୍ପନିକ— ୩ । ମଦନମଞ୍ଜରୀ

୪ । ଅନଙ୍ଗ ରେଖା

୫ । ତ୍ରିପୁର ସୁନ୍ଦରୀ

୬ । ରତ୍ନ ମଞ୍ଜରୀ

ବିବିଧ— ୭ । ଇଚ୍ଛାବତୀ (ଅନୁବାଦାତ୍ମକ)

୮ । ଚଉପଦୀ ଭୂଷଣ (ସଙ୍ଗୀତ)

୯ । ଶାଳିହୋତ୍ର ଗ୍ରନ୍ଥ (ଅଶ୍ୱଶାସ୍ତ୍ର ଅନୁବାଦ)

ମଦନମଞ୍ଜରୀ କାବ୍ୟଟି ମହାମହୋପାଧ୍ୟାୟ ପଣ୍ଡିତ ସ୍ୱର୍ଗତ ତାରିଣୀ ଚରଣ ରଥ ସଂଗ୍ରହ କରି ୧୯୧୫ ମସିହାରେ ପ୍ରକାଶ କରିଥିଲେ । ତାହା ପୁନର୍ବାର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ତାରିଣୀ ଚରଣ ଗ୍ରନ୍ଥାବଳୀରେ ପ୍ରକାଶ ପାଇଛି ।

ଇଚ୍ଛାବତୀ ଓ ଅନଙ୍ଗରେଖା କାବ୍ୟ ଦୁଇଟି ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ସମ୍ପାଦନାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ୧୯୭୦ ମସିହାରେ ପ୍ରକାଶ ପାଇଛି ।

ଧନଞ୍ଜୟ ଭଞ୍ଜ ଅଶ୍ୱାରୋହଣ କରିବାରେ ଅତ୍ୟନ୍ତ ପାରଦର୍ଶିତା ଲାଭ କରିଥିଲେ । ସେ ନିଜେ "ଶାଳିହୋତ୍ର" ନାମକ ଏକ ଅଶ୍ୱଶାସ୍ତ୍ର ରଚନା କରିଥିଲେ । ତେଣୁ କବି ଶେଖର ଚନ୍ଦ୍ରମଣି ମହାନ୍ତି ତାଙ୍କ ଘୁମୁସର କାବ୍ୟରେ ଲେଖିଛନ୍ତି—

ଗୋପୀନାଥଙ୍କର ଧାର୍ମିକ ତନୟ ।
ଧନଞ୍ଜୟ ଭଞ୍ଜ ଯଥା ଧନଞ୍ଜୟ ॥

× × ×

ଅବ୍ୟର୍ଥ ତାଙ୍କର ଥିଲା ଲକ୍ଷ୍ୟ ଭେଦ ।
ଅବତୀର୍ଣ୍ଣ କିବା ସ୍ୱୟଂ ଧନୁର୍ବେଦ ॥
ସୁରଜା ବାଞ୍ଛିତ ଗୁଣେ ପରିପୂର୍ଣ୍ଣ ।
ସାହିତ୍ୟ-ସଙ୍ଗୀତ-ଶିଳ୍ପ ସୁନିପୁଣ ॥
ବିରଚିଲେ ଶ୍ରୀ ମଦନ ମଞ୍ଜରୀ ।
"ଶାଳିହୋତ୍ର" ଗ୍ରନ୍ଥ ବହୁ ଯତ୍ନ କରି ॥
ପୁଣି ରଘୁନାଥ ବିଳାସ ସୁକାବ୍ୟ ।
ରସ ଭାବପ୍ରାଣ ସରଳ ସୁଶ୍ରାବ୍ୟ ॥ (ଘୁମୁସର କାବ୍ୟ ପୃ: ୯୭)

ଧନଞ୍ଜୟ ଭଞ୍ଜଙ୍କ ସାରସ୍ୱତ ସମ୍ପଦକୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଉତ୍ତରାଧିକାର ସୂତ୍ରରେ ପିତାମହଙ୍କଠାରୁ ଲାଭକରି ତାର ଅଭିବୃଦ୍ଧି ପାଇଁ ରାମତାରକ ମନ୍ତ୍ର ସିଦ୍ଧ କରି ଓଡ଼ିଆ ଭାଷାର ବିକାଶ ଦିଗରେ ଯେ ଯେଉଁ ଅବଦାନ ଦେଇ ଯାଇଛନ୍ତି ତାହା ଏ ଜାତି ଚିରଦିନ ଭୁଲିପାରିବ ନାହିଁ । ଧନଞ୍ଜୟ

ଭଞ୍ଜଙ୍କ ମଦନମଞ୍ଜରୀ, ଅନଙ୍ଗରେଖା, ତ୍ରିପୁର ସୁନ୍ଦରୀ, ରତ୍ନମଞ୍ଜରୀ, ଇଚ୍ଛାବତୀ ପ୍ରଭୃତି କାଳ୍ପନିକ କାବ୍ୟ ଶ୍ରୀରାମ ବିଳାସ ବା ରଘୁନାଥ ବିଳାସ, ଶ୍ରୀକୃଷ୍ଣ ଲୀଳା ପ୍ରଭୃତି ପୌରାଣିକ କାବ୍ୟ, ଚୌପଦୀ ଭୂଷଣ ପରି ବହୁଳ ରାଗରାଗିଣୀ ପୂର୍ଣ୍ଣ ସଙ୍ଗୀତ ରଚନା, ପୌତ୍ର ଉପେନ୍ଦ୍ର ଭଞ୍ଜଙ୍କୁ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ରସିକ ହାରାବଳୀ ପ୍ରଭୃତି କାଳ୍ପନିକ କାବ୍ୟ, ଏବଂ ବୈଦେହୀଶ ବିଳାସ, ଅବନା ରସ ତରଙ୍ଗ, ରାମଲୀଳାମୃତ, ଷୋଳଚୌପାଇ, ଛାନ୍ଦ ଭୂଷଣ, କଳା କଉତୁକ ପ୍ରଭୃତି ପୌରାଣିକ କାବ୍ୟ, ଲାବଣ୍ୟନିଧି, ଚୌପଦୀ ଭୂଷଣ, ସଙ୍ଗୀତ ଉପେନ୍ଦ୍ର ଭଞ୍ଜ ପରି ସଙ୍ଗୀତ ପ୍ରଧାନ ଗ୍ରନ୍ଥ ପ୍ରଣୟନରେ ପ୍ରେରଣା ଯୋଗାଇଥିଲା । ବୈଦେହୀଶ ବିଳାସ ପରି ଏକ ମହାକାବ୍ୟ ରଚନା କରିବାରେ ଧନଞ୍ଜୟ ଭଞ୍ଜଙ୍କ ରଘୁନାଥ ବିଳାସ ବା ଶ୍ରୀରାମ ବିଳାସ ବିଶେଷ ପ୍ରେରଣା ଯୋଗାଇଥିବା ସମ୍ବାଦ ବିଦିତ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜ ରଚିତ ଲାବଣ୍ୟବତୀ କାବ୍ୟରେ ପିତାମହ ଧନଞ୍ଜୟ ଭଞ୍ଜଙ୍କୁ ସ୍ମରଣ କରି ଲେଖିଛନ୍ତି —

ସେ କୁଳେ ରାଜା ଧନଞ୍ଜୟ
ସକଳ ଗୁଣର ନିଳୟ ।

ଘୁମୁସର ଅଧିପ ହେଲେ
ଲୋକେ ବିଖ୍ୟାତ କବିଗୁଣେ ।

ତଦ୍‌ବର ତାହାଙ୍କ ତନୁଜ
ନରେଶ ନୀଳକଣ୍ଠ ଭଞ୍ଜ ।

ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ
ଉପେନ୍ଦ୍ର ଭଞ୍ଜ ନାମ ବହି ॥

ପୁଣି ବୈଦେହୀଶ ବିଳାସରେ ସେ ଉଲ୍ଲେଖ କରିଛନ୍ତି —

ବିରଞ୍ଚି ବଂଶେ ଉଦ୍‌ଭବ ନୃପ ଧନଞ୍ଜୟ
ବରିଷ୍ଠ ଘୁମୁସର ଅଧିପ ଗୁଣାଳୟ ।

× × ×

ବେନି ଅର୍ଥେ ସେ କବି ଗଣେଶ ବୋଲି ଜାଣ ।

ଇତ୍ୟାଦି ।

କବି ଧନଞ୍ଜୟ ଭଞ୍ଜଙ୍କ ରଚିତ ଶ୍ରୀକୃଷ୍ଣ କ୍ରୀଡ଼ା ଏକ ଅପ୍ରକାଶିତ କାବ୍ୟ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଏହାର ଗୋଟିଏ ତାଳପତ୍ର ପୋଥି (OL/1243) ସଂଗୃହୀତ ହୋଇ ରହିଛି । ପୋଥିଟିର ଦୈର୍ଘ୍ୟ × ପ୍ରସ୍ଥ ହେଉଛି ୨୪.୪ ସେ.ମି × ୩୩ ସେ.ମି । ପ୍ରତି ପତ୍ରର ଉଭୟ ପାର୍ଶ୍ୱରେ ପ୍ରାୟ ପାଞ୍ଚ ଧାଡ଼ି ଲେଖାଏଁ ପାଠ ରହିଛି । ଶ୍ରୀକୃଷ୍ଣ କ୍ରୀଡ଼ା ସମାପ୍ତ ପରେ ପୋଥିଟିରେ ଲୋକନାଥ ବିଦ୍ୟାଧରଙ୍କ ରଚିତ କେତୋଟି ଚୌତିଶା ରହିଛି । ସଂଗ୍ରହାଳୟ ଦ୍ୱାରା ସଂରକ୍ଷିତ ଏହି ପୋଥିଟି ପୁରୀ ଜିଲ୍ଲା ନିମାପଡ଼ା ଅନ୍ତର୍ଗତ ଗୁହାଳପଡ଼ା ଗ୍ରାମର ଶ୍ରୀ ଲିଙ୍ଗରାଜ ଦାସଙ୍କ ଠାରୁ କଣାହୋଇ ସଂରକ୍ଷିତ ହୋଇ ରହିଛି ।

**କଥାବସ୍ତୁ—**

ରାଜକବି ଧନଞ୍ଜୟ ଭଞ୍ଜଙ୍କ ରଚିତ ପାଞ୍ଚ ଛାନ୍ଦ ସମ୍ବଳିତ 'ଶ୍ରୀକୃଷ୍ଣ କ୍ରୀଡ଼ା' ଏକ କ୍ଷୁଦ୍ରକାୟ ଲଘୁକାବ୍ୟ । ଭାଗବତର ପ୍ରସିଦ୍ଧ ରାସପଞ୍ଚାଧ୍ୟାୟୀର ବିଷୟ ଏଥିରେ ବର୍ଣ୍ଣିତ ହୋଇଥିବାରୁ ଏହା ମଧ୍ୟ ପାଞ୍ଚଗୋଟି ଛାନ୍ଦରେ ବିଭକ୍ତ ହୋଇଛି ।

ପ୍ରଥମ ଛାନ୍ଦଟି ଗୁର୍ଜରୀ ରାଗରେ ଲିଖିତ । ଏଥିରେ ୭୯ ପଦ ବା ୧୫୮ ଧାଡ଼ି ରହିଛି । କବି କମଳାପତି ବିଷ୍ଣୁଙ୍କୁ ବନ୍ଦନା କରି କାବ୍ୟଟି ଆରମ୍ଭ କରିଛନ୍ତି । ଛାନ୍ଦ ଆରମ୍ଭରେ କବି ମଙ୍ଗଳାଚରଣ ମଧ୍ୟରେ କୃଷ୍ଣଙ୍କ ବାଲ୍ୟ ଓ ଯଶୋଗାନ ଛଳରେ ସମଗ୍ର ଇତିବୃତ୍ତ ସୂଚିତ କରାଇଛନ୍ତି । ତାପରେ ବୃନ୍ଦାବନର ବର୍ଣ୍ଣନା ଏବଂ ସେଠାରେ ସୁନ୍ଦର ଶେଖର ଶ୍ରୀକୃଷ୍ଣ ଓ ସୁନ୍ଦରୀ ଶିରୋମଣି ରାଧାଙ୍କ ପରସ୍ପର ଦର୍ଶନ ଜନିତ ପ୍ରେମାନୁରକ୍ତି ବର୍ଣ୍ଣିତ ହୋଇଛି । କବି ଲେଖିଛନ୍ତି—

ରାଧା ନେତ୍ରେ ରହେ ଶ୍ୟାମଘନ ମୂରତି ।
କୃଷ୍ଣର ନେତ୍ରେ ରହିଲା କନକଗୋରୀ ।।
(ଶ୍ରୀକୃଷ୍ଣ କ୍ରୀଡ଼ା ୧/୭୧)

ତା ପରେ ରାଧା, କୃଷ୍ଣ ଚିନ୍ତାରେ କ୍ଷୀଣ ହେବା, ବିରହ ବେଦନା ଅନୁଭବ କରିବା ବର୍ଣ୍ଣିତ ହୋଇଛି । ରାଧାଙ୍କର ଦଶା ଦେଖି ତାଙ୍କର ପ୍ରିୟ ସଖୀ ବୃନ୍ଦା ଶ୍ରୀକୃଷ୍ଣଙ୍କ ପ୍ରୀତି ଲାଭ ପାଇଁ ଉପାୟ ଚିନ୍ତା କରନ୍ତି ।

ଦ୍ୱିତୀୟ ଛାନ୍ଦଟି କେଦାର ଚକ୍ରକେଳି ରାଗରେ ରଚିତ । ଏଥିରେ ୫୦ଟି ପଦ ବା ୧୦୦ଟି ଧାଡ଼ି ରହିଛି । ରାଧା ବନେ ସ୍ୱପ୍ନରେ କୃଷ୍ଣଙ୍କୁ ଦେଖି ତାଙ୍କର ରୂପ ବର୍ଣ୍ଣନା ପୂର୍ବକ ନିଜର ମନୋଭାବ ସଖୀ ଦୂତିକା ନିକଟରେ ଗୂଢ଼ରେ ପ୍ରକାଶ କରିଛନ୍ତି ଏବଂ ସଖୀ ମଧ୍ୟ ସ୍ପଷ୍ଟତଃ ରାଧାଙ୍କ ମନୋଭାବ ବୁଝି ପାରିଛନ୍ତି ।

ତୃତୀୟ ଛାନ୍ଦଟି ବରାଡ଼ି ରାଗରେ ରଚିତ । ଏଥିରେ ୨୫ ପଦ ବା ୧୫୦ ଧାଡ଼ି ରହିଛି । ଦୂତିକା ଶ୍ରୀକୃଷ୍ଣଙ୍କ ନିକଟକୁ ଯାଇ ରାଧାଙ୍କ ରୂପ ବର୍ଣ୍ଣନା ପୂର୍ବକ ରାଧାଙ୍କର ତାଙ୍କ ପ୍ରତି ଅନୁରାଗ ଓ ତଜ୍ଜନିତ ବିରହ ଦଶା ବର୍ଣ୍ଣନା କରିଛି । ଶ୍ରୀକୃଷ୍ଣ ସବୁ କଥା ଶୁଣିଲା ପରେ ଦୂତିକା ନିକଟରେ ରାଧାଙ୍କ ପ୍ରତି ନିଜର ଅନୁରକ୍ତି ପ୍ରକାଶ କରିଛନ୍ତି ।

ଚତୁର୍ଥ ଛାନ୍ଦଟି ବିଷ ବରାଡ଼ି ରାଗରେ ରଚିତ । ଏଥିରେ ୧୯ ପଦ ବା ୩୮ ଧାଡ଼ି ରହିଛି । ଦୂତିକା ଶ୍ରୀକୃଷ୍ଣଙ୍କ ପାଖରୁ ଫେରି ରାଧାଙ୍କ ପାଖରେ ମଧ୍ୟ ଅନୁରୂପ ଭାବରେ ଶ୍ରୀକୃଷ୍ଣଙ୍କ ଅନୁରାଗ ଓ ବିରହାବସ୍ଥା ବର୍ଣ୍ଣନା କରିଛି ।

ପଞ୍ଚମ ଛାନ୍ଦଟି କଳସା ରାଗରେ ରଚିତ । ଏଥିରେ ରାଧାକୃଷ୍ଣଙ୍କର ବସନ୍ତରାସ ବର୍ଣ୍ଣିତ ହୋଇ କାବ୍ୟର ସମାପ୍ତି ଘଟିଛି ।

## କାବ୍ୟର ମୂଲ୍ୟାୟନ —

କବିଙ୍କ 'ଶ୍ରୀକୃଷ୍ଣ ଲୀଳା' କେବଳ ଏକ ଗ୍ରାମ୍ୟ ଗୋପ ବାଳିକା ଭକ୍ତ ସରଳ ହୃଦୟ ଓ ନିରାଡ଼ମ୍ବର କାବ୍ୟ । ଏଥିରେ କେବଳ ଆଗାମୀ ଯୁଗର କାବ୍ୟିକ ବିକାଶ ପାଇଁ ସଙ୍କେତ ବ୍ୟଞ୍ଜିତ କାବ୍ୟ ପଦ୍ଧତି ପ୍ରକାଶ ପାଇଁ ପ୍ରୟାସ ନାହିଁ କି ମଧ୍ୟଯୁଗୀୟ ଜଟିଳତର କଷ୍ଟ କଳ୍ପନାର ଅବକାଶ ବି ନାହିଁ । ଭାଗବତ ରାସ ପଞ୍ଚାଧ୍ୟାୟୀର ପ୍ରଭାବ ଲକ୍ଷିତ ହେଲେ ହେଁ କାବ୍ୟଟିରେ ରାଧାକୃଷ୍ଣଙ୍କର ପ୍ରଥମ ଦର୍ଶନ ସମ୍ଭୂତ ଅନୁରାଗ ଓ ତଦ୍ଧେତୁକ ବିରହ ବର୍ଣ୍ଣନା ପରେ ମିଳନକୁ ସୁଖାନ୍ତକ କରାଯାଇ ଏହାକୁ ସମ୍ପୂର୍ଣ୍ଣ ରୀତି ଯୁଗୀୟ କାଳ୍ପନିକ କାବ୍ୟଗ୍ରନ୍ଥରେ ଗଢ଼ାଯାଇଛି । ଭାଗବତରେ ବର୍ଣ୍ଣିତ ରାସଯାତ୍ରାଠାରୁ ଏବଂ ଏହା ବହୁ ଗୋପୀଙ୍କ ସହିତ ଏକ କୃଷ୍ଣଙ୍କ ଏକାଧିକ ରୂପରେ ମଣ୍ଡଳାକାର ନୃତ୍ୟ ବିଶେଷ ।

ଶ୍ରୀକୃଷ୍ଣ କ୍ରୀଡ଼ାରେ କେବଳ ଗୋପୀଙ୍କ ସହିତ ଶ୍ରୀକୃଷ୍ଣଙ୍କ କ୍ରୀଡ଼ା ବର୍ଣ୍ଣନା ହୋଇଛି । ଶ୍ରୀମଦ୍ଭାଗବତରେ ରାଧାଙ୍କ ନାମୋଲ୍ଲେଖ ନଥିବା ସ୍ଥଳେ ଶ୍ରୀକୃଷ୍ଣ କ୍ରୀଡ଼ାରେ ରାଧାଙ୍କ ନାମ ସ୍ପଷ୍ଟ ଉଲ୍ଲେଖ ଥିବାରୁ କବିଙ୍କ ଉପରେ ପରବର୍ତ୍ତୀ ପୁରାଣ ପରମ୍ପରା ବିଶେଷତଃ ହରିବଂଶର ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ । କବି ଧନଞ୍ଜୟଙ୍କ କାବ୍ୟରୁ ରାଧାଙ୍କ ଅନ୍ୟ ନାମ ଚନ୍ଦ୍ରାବଳୀ ବା ଚନ୍ଦ୍ରାବତୀ ଥିବା ଜଣାଯାଏ । କିନ୍ତୁ ଅନ୍ୟତ୍ର ଚନ୍ଦ୍ରାବଳୀ ରାଧାଙ୍କ ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ ଏକ କୃଷ୍ଣପ୍ରାଣା ଗୋପୀ ବୋଲି ଉଲ୍ଲେଖ ରହିଛି ।

କାବ୍ୟଟି ସରଳ ଛନ୍ଦୋବନ୍ଧରେ ଓ ଅର୍ଥାଡ଼ମ୍ବରହୀନ ସହଜ ଭାଷାରେ ରଚିତ ହୋଇଥିବାରୁ ପଠନ ମାତ୍ରେ ପାଠକର ଅନାୟାସରେ ଅର୍ଥ ବୋଧ ହୁଏ । କିନ୍ତୁ ଶବ୍ଦରାଜି ମଧ୍ୟରେ ଅନଳ୍ପ ଭାବ ପ୍ରକାଶ କରିବାରେ ଧନଞ୍ଜୟଙ୍କ ଦକ୍ଷତା ଅନୁଧ୍ୟାନଯୋଗ୍ୟ । ପ୍ରଥମ ଦର୍ଶନରେ ରାଧାକୃଷ୍ଣଙ୍କର ପରସ୍ପର ପ୍ରତି ଅନୁରକ୍ତିକୁ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି—

ରାଧା ନେତ୍ରେ ରହେ ଶ୍ୟାମଘନ ମୁରାରି
କୃଷ୍ଣର ନେତ୍ରେ ରହିଲା କନକ ଗୋରୀ ।

ପ୍ରକୃତି ବର୍ଣ୍ଣନାରେ ରାଜକବି ଧନଞ୍ଜୟ ସିଦ୍ଧହସ୍ତ ଥିଲେ । ପଶୁ, ପକ୍ଷୀ, ଫୁଲ, ଫଳ, ବୃକ୍ଷ, ଲତା ଗୁଡ଼ିକର ମଞ୍ଜୁଳ ଚିତ୍ରଣ ଦ୍ୱାରା ତାଙ୍କର ପ୍ରକୃତି ଅତ୍ୟନ୍ତ ଶୋଭା ସମ୍ପନ୍ନ ଓ ସଜୀବ ହୋଇପାରିଛି । ପ୍ରକୃତି ବର୍ଣ୍ଣନାରେ ମଧୁ ଶୃଙ୍ଗାର ରସର ଅନ୍ତଃବାହୀ ଧାରା କାବ୍ୟର ମୂର୍ଚ୍ଛନା ଟିକୁ ଅମ୍ଳାନ ଓ ଉଜ୍ଜୀବିତ କରି ରଖିଛି । କାବ୍ୟଟିରେ ସେ ଯୁଗର ଓଡ଼ିଆଣୀ ଅଳଙ୍କାର ଯଥା— ମୋହନମାଳ (୪/୧୭) ହିରା ହାର କାଚ (୫/୮) ଓ ଗଜମୋତି (୫/୯) ପ୍ରଭୃତିର ବ୍ୟବହାର ତତ୍କାଳୀନ ବେଶଭୂଷା ସମ୍ବନ୍ଧରେ ପାଠକ ମନରେ ଏକ ଧାରଣା ସୃଷ୍ଟି କରିଥାଏ ।

ସଂକ୍ଷେପରେ କହିବାକୁ ଗଲେ ସହଜ ଛନ୍ଦରେ ସରଳ ଭାଷାରେ ମନୋଜ୍ଞ ଭାବକୁ ସଜୀବ ଆକାରରେ ରୂପ ଦେବାରେ ରାଜକବି ଧନଞ୍ଜୟ ଭଞ୍ଜ ଏକ କୁଶଳୀ ପ୍ରତିଭା ସମ୍ପନ୍ନ କବି ଥିଲେ । ଓଡ଼ିଆ ସାହିତ୍ୟ ଜଗତକୁ ସେ ଅନେକ ଅନୁବାଦ ଓ ସର୍ଜନାତ୍ମକ ଅନେକାନେକ କାବ୍ୟକୃତି ଦାନ କରିବା

ଯେଉଁ ପରେ ମାତୃ ସାହିତ୍ୟର ଦୈନ୍ୟ ଅପସାରଣ ମନ କରି ସେଉଁମାନ ଉତ୍ତରାଧିକାରୀ ଉପେନ୍ଦ୍ର ଭଞ୍ଜଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଗଲେ ଏବଂ ଓଡ଼ିଆ ଜାତି ତାଙ୍କୁ 'କବିସମ୍ରାଟ' ଭାବରେ ସ୍ୱୀକାର କରିଗଲେ ତାହାକୁ ହିଁ ଧନଞ୍ଜୟ ଭଞ୍ଜଙ୍କର ସାର୍ଥକସିଦ୍ଧି ବୋଲି କୁହାଯାଇ ପାରେ ।

ଘୁମୁସର ରାଜବଂଶରେ ବହୁତ କବି ଜନ୍ମଗ୍ରହଣ କରିଥିବା ଜଣାଯାଏ । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସେମାନଙ୍କର ଦାନ ଅନେକ । ବିଶେଷତଃ ଘୁମୁସରର ପ୍ରଥମ କବି ବଳଭଦ୍ର ଭଞ୍ଜ, ଗୋପାଳ ଭଞ୍ଜ, ଧନଞ୍ଜୟ ଭଞ୍ଜ, ନୀଳକଣ୍ଠ ଭଞ୍ଜ, ଘନ ଭଞ୍ଜ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଫକୀର ଭଞ୍ଜ, ହରିବିକ୍ରମ ଭଞ୍ଜ ଏବଂ ଶ୍ରୀକର ଭଞ୍ଜଙ୍କର ରଚନା ଦେଖିବାକୁ ମିଳେ ।

ଘୁମୁସରର ଶାସକମାନେ କେବଳ ରାଜ୍ୟ ପରିଚାଳନା ଓ ରାଜନୀତିରେ ମଗ୍ନ ନ ରହି ନିଜକୁ ସାହିତ୍ୟ ସାଧନାରେ ହଜାଇ ଦେଇଥିବା ଇତିହାସରୁ ଜଣାଯାଏ । ସେମାନେ ନିଜ ରାଜ୍ୟ ଘୁମୁସରର ସ୍ୱାଧୀନତା ବଜାୟ ରଖିବା ପାଇଁ ପ୍ରବଳ ଦେଶପ୍ରେମୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରି ବିପ୍ଳବର ସୂତ୍ରପାତ କରିଥିଲେ । ସେତେବେଳେ ଇଂରେଜ ଶାସନ ବିରୁଦ୍ଧରେ ଘୁମୁସରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ବିପ୍ଳବ ପାଖ ୫୦ ବର୍ଷ ଧରି ଚାଲିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏସବୁ ସତ୍ତ୍ୱେ ଘୁମୁସରର ରାଜାମାନେ କେବେ ସାହିତ୍ୟ ସାଧନାରୁ ବିରତ ହୋଇନଥିଲେ । କବିବର ଚିନ୍ତାମଣି ମହାନ୍ତି ତାଙ୍କ ଘୁମୁସର କାବ୍ୟରେ ଲେଖିଛନ୍ତି—

ସାହିତ୍ୟ ଉତ୍କଳ ନନ୍ଦନ ପ୍ରଫୁଲ୍ଲ ।
ଗଞ୍ଜାମ ଚିହ୍ନରେ ପାରିଜାତ ଫୁଲ ॥

ପୁଣ୍ୟ ଘୁମୁସର ସେ ଫୁଲର ମଧୁ ।
କାଳେ କାଳେ ଖ୍ୟାତ ତାହାର ବିଧୁ ॥

ଅଥବା ଗଞ୍ଜାମ ସୌନ୍ଦର୍ଯ୍ୟ ପୁସ୍ତିକା ।
ଘୁମୁସର ତାର ସୁବୋଧିନୀ ଟୀକା ॥

ଶଶାଙ୍କ ମଣ୍ଡଳୀ ଉତ୍କଳ ଧରଣୀ ।
ଗଞ୍ଜାମ ତା'ମଧ୍ୟେ ପୂର୍ଣ୍ଣ ନିଶାମଣି ॥
ଘୁମୁସର ଜ୍ୟୋତ୍ସ୍ନା ସେ ନିଶାମଣିର ।
ଅତ୍ୟୁକ୍ତି ବର୍ଣ୍ଣନା ନୁହେ ଏହ୍ନ ଗିର ॥
(ଘୁମୁସର କାବ୍ୟ ପୃ ୨୭)

ଘୁମୁସର ଗାଁଗହଳରେ ଅନେକ ତାଳପତ୍ର ପୋଥି ଲୁକ୍‌କାୟିତ ଭାବରେ ପଡ଼ିରହିଛି । ସେଗୁଡ଼ିକ ଯତ୍ନ ଅଭାବରୁ ଆସ୍ତେ ଆସ୍ତେ ଜଇ, ମୂଷାଙ୍କର ପ୍ରିୟ ଖାଦ୍ୟ ହେଉଅଛି । ଏପରି ଗୁପ୍ତ ରତ୍ନଗୁଡ଼ିକୁ କିପରି ସଂଗ୍ରହ କରି ସେଥିରୁ ଅପ୍ରକାଶିତ ପୋଥିଗୁଡ଼ିକ ପ୍ରକାଶ କରିବାର ଉଦ୍ୟମ ହେବ ଏଥିପାଇଁ ବିଦ୍ୟୋତ୍ସାହୀମାନେ ଉଦ୍ୟମ କରିବା ଉଚିତ । ତା' ନ ହେଲେ ଆସ୍ତେ ଆସ୍ତେ ସେହି ଅମୂଲ୍ୟ ରତ୍ନ ଗୁଡ଼ିକ ଲୋପ ପାଇଯିବ ।

ଆମେ ତ୍ରିବର୍ଷ ଦୁଇଖଣ୍ଡ କରି ଅପ୍ରକାଶିତ ପୋଥି ସଂଗ୍ରହ କରି ପ୍ରକାଶ କରିବା ପାଇଁ ଉଦ୍ୟମ କରୁଛୁ । ଏ ପର୍ଯ୍ୟନ୍ତ ଭଞ୍ଜ ବଂଶାବଳୀ ସମ୍ବଳିତ (ପଦ୍ୟ ଓ ଗଦ୍ୟ) ତିନିଖଣ୍ଡ ଓ ବୈଷ୍ଣବ କବି ଭକ୍ତଚରଣ ଦାସଙ୍କର ଶ୍ରୀ ରଘୁନାଥ ଜଣାଣ ଏପରି ଚାରି ଖଣ୍ଡ ବହି ତାଳପତ୍ର ପୋଥିରୁ ସଂଗ୍ରହ କରି ପ୍ରକାଶ କରିଛୁ । ଭବିଷ୍ୟତରେ ଆଉ କିଛି ପୋଥି ସଂଗ୍ରହ କରିବା ବାସନା ରହିଲା । ଏ କ୍ଷେତ୍ରରେ ଓଡ଼ିଶାର ସୁଧୀ ପାଠକ, ପାଠିକା, ସମାଲୋଚକ ଓ ଗବେଷକମାନଙ୍କ ସାହାଯ୍ୟ ସହଯୋଗ କାମନା କରୁଛୁ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଅଧ୍ୟକ୍ଷ ମହାଶୟ 'ଶ୍ରୀକୃଷ୍ଣ ନୀତି' କାବ୍ୟଟି ପ୍ରକାଶ କରିବା ପାଇଁ ଆମକୁ ଅନୁମତି ଦେଇଥିବାରୁ ସେ ମହାଶୟଙ୍କ ନିକଟରେ ଆମେ କୃତଜ୍ଞତା ଜଣାଉଛୁ । ବିଶେଷତଃ ସଂଗ୍ରହାଳୟର କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ର ଆମକୁ ଏ ଦିଗରେ ବିଶେଷ ଉତ୍ସାହିତ କରିଥିବାରୁ ତାଙ୍କ ନିକଟରେ ଆମେ ଚିର କୃତଜ୍ଞ ।

ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗର ସମ୍ପାଦକ ସୁସାହିତ୍ୟିକ ଓ ଆଲୋଚକ ଶ୍ରୀଯୁକ୍ତ ଦୁର୍ଗାଶ୍ୟାମ ପଟ୍ଟନାୟକ 'ନବରବି' ସପ୍ତମ ବର୍ଷ

ଚତୁର୍ଥ ସଂଖ୍ୟାରେ 'ଶ୍ରୀକୃଷ୍ଣ ଲୀଳା' କାବ୍ୟ ସମ୍ପର୍କରେ ଯେଉଁ ବିସ୍ତୃତ ଆଲୋଚନା କରିଥିଲେ ତାହା ଅତ୍ୟନ୍ତ ଉଚ୍ଚକୋଟିର ହୋଇଥିବାରୁ ସେହି ଆଲୋଚନାର କିଛିଦ୍ ଅଂଶ ଏଠାରେ ଅବତାରଣା କରିଥିବାରୁ ସେ ମହାଶୟଙ୍କ ନିକଟରେ ଆମେ ଋଣୀ ।

ଯେଉଁ ବନ୍ଧୁମାନେ ବହିଟି ପ୍ରକାଶ କରିବାକୁ ମତେ ପ୍ରେରଣା ଓ ଉତ୍ସାହ ଦେଇଛନ୍ତି ସେମାନଙ୍କୁ ଧନ୍ୟବାଦ ଜଣାଉଛି । ବନ୍ଧୁ ଗଜେନ୍ଦ୍ର ପ୍ରସାଦ ଷଡ଼ଙ୍ଗୀ ବହିଟିର ଆବଶ୍ୟକୀୟ ସଂଶୋଧନ କରି ଦେଇଥିବାରୁ ତାଙ୍କୁ ପୃଥକ ଭାବେ ଧନ୍ୟବାଦ ଜଣାଉଛି । ବନ୍ଧୁ ପ୍ରଶାନ୍ତ ମହାନ୍ତିଙ୍କ ଉତ୍ସାହ ଭୁଲିବାର ନୁହେଁ ।

ଆଜ ମୋ ଦ୍ୱାରା 'ଶ୍ରୀକୃଷ୍ଣ ଲୀଳା' କାବ୍ୟ ଭଳି ଏକ ଉପାଦେୟ ବହି ତାଳପତ୍ର ପୋଥିରୁ ସଂଗ୍ରହ କରି ପ୍ରକାଶ ହେଉଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଓଡ଼ିଶାର ପାଠକ, ପାଠିକା, ଗବେଷକ ଓ ସମାଲୋଚକ-ମାନଙ୍କଠାରୁ ଉତ୍ସାହ ଓ ପ୍ରେରଣା ପାଇଲେ ଭବିଷ୍ୟତରେ ଆଉ କେତେଖଣ୍ଡ ଅପ୍ରକାଶିତ ତାଳପତ୍ର ପୋଥି ସଂଗ୍ରହ କରି ପ୍ରକାଶ କରିବା ଆଶା କରି ରହିଲି ।

ଭଞ୍ଜନଗର
ତା ୧-୩-୧୯୮୭

ଶ୍ରୀ ମାଗୁଣି ଦାଶ
ସଂଗ୍ରାହକ ଓ ସମ୍ପାଦକ

# ଶ୍ରୀକୃଷ୍ଣ ଲୀଳା

—o—

## ପ୍ରଥମ ଛାନ୍ଦ

(ରାଗ-ଗୁର୍ଜ୍ଜରୀ)

ଜୟ ଜୟ ଭକତ ବତ୍ସଳ ମୁରାରି,
ଶକ୍ର ଗରବ ଭଞ୍ଜିଲେ ଗିରି ଧରି ॥ ୧ ॥
ପ୍ରବଳ ପାପିଷ୍ଠ ଦାନବଙ୍କୁ ଦଳିଲେ,
ବସୁମତୀ ଭାର ତେଣୁ ଉଶ୍ୱାସ କଲେ ॥ ୨ ॥
ଭୋଜପତି ଗର୍ବହେଲେ କଲେ ଯେ ଚୂର୍ଣ୍ଣ,
ଚାଣୂର, ମୁଷ୍ଟିକ ଆଦି କେତେକ ବୀର ॥ ୩ ॥
ଯଦୁବଂଶ କଇରବ ପ୍ରକାଶ ଇନ୍ଦୁ,
ଭକତ ଜନ ଲୋଚନ ଲାବଣ୍ୟ ସିନ୍ଧୁ ॥ ୪ ॥
ପ୍ରଫୁଲ୍ଲ ଅମ୍ବୁଜ ନିନ୍ଦା କରଇ ଶ୍ରୀମୁଖ,
ଦେଖନ୍ତେ ଜ ଦଶ ଲୋକେ ଲଭନ୍ତ ସୁଖ ॥ ୫ ॥
ଗୋପୀ ନୟନ ଭୃଙ୍ଗର ଆନନ୍ଦ ସ୍ଥାନ,
ଦୁର୍ଜନେ ଦଅନ୍ତ ଯେତୁ ମୁକତି ଦାନ ॥ ୬ ॥
ଶାଲ୍ୱ, ଶିଶୁପାଳ ଦ୍ୱୟ ସୁଘ ଅସୁର,
ନରକାଦି ବଜ୍ରନାଭ ଦାନବ ସୁର ॥ ୭ ॥
ଏମାନଙ୍କୁ ଦେଲେ କଇବଲ୍ୟ ମୁକତି,
ଗୋପେ ଲୀଳା କଲେ ଯେଣୁ ଗୋପ ଯୁବତୀ ॥ ୮ ॥
ମୁନି ନୟନ ଚକୋର ଆନନ୍ଦ ଘନ,
ରଞ୍ଜିତ ଜଳଧ ନୀଳଦ୍ରୁମ ସମାନ ॥ ୯ ॥

ଗଜାନନ ସୋଦର ଯେ ଷଣ୍ମୁଖାଗର,
ଭକତ ଜନର ଯେ ଅଭୟ ଗମ୍ଭୀର ।। ୧୦ ।।

ଯେ ପ୍ରଭୁ ଚରଣୁ ଆନ ନାହିଁ ମୋ ଗତି,
ପ୍ରସନ୍ନ ହୋଇବା ମୋତେ କମଳାପତି ।। ୧୧ ।।

କହୁଁ ଭୃଙ୍ଗ କେଳି କଥା କଳ୍ପ ମୋ ମନ,
ତେଣୁ ଆଜ୍ଞା ମାଗଇ ଅମ୍ବୁଜ ଲୋଚନ । ୧୨ ।

ବସନ୍ତ ସମୟେ ବୃଷଭାନୁ ନନ୍ଦନୀ,
ପ୍ରିୟ ସଖୀମାନଙ୍କୁ ଯେ ସଙ୍ଗତେ ଘେନି । ୧୩ ।

କୁଞ୍ଜକୁ ମିଳିଲେ କାଳିନ୍ଦୀ ନିକଟ,
ନାନା ତରୁବରେ ଫୁଲ ଅତି ପ୍ରକଟ । ୧୪ ।

ପୁଷ୍ପିତେ ଲୋଟନ୍ତି ତରୁ ପତ୍ର ମଣ୍ଡଳ,
କୋଳାହଳ ଧ୍ୱନି ଭରେ ଅଣ୍ଡଜ କୁଳ ।। ୧୫ ।।

ତରଙ୍ଗ ଭଙ୍ଗ ରୁଚିର ଯେହ୍ନ ନନ୍ଦନ,
ତପତେ ତଚାଇ ଦିଶେ ତଟ ଅବନୀ ।। ୧୬ ।।

ନବଶଶ କୁଳ ମଧୁପାନେ ମୁଦିତ,
ଚୁମ୍ବନ୍ତି କମଳ ହୋଇ ନିଷ୍ଠୁଳ ଚିତ୍ତ ।। ୧୭ ।।

ଚକ୍ର ଚକ୍ର ହୋଇ କଳକଣ୍ଠ ବୀଡ଼ନ୍ତି,
କମଳ ମୃଣାଳ ଚଞ୍ଚୁପୁଟେ ଆଣନ୍ତି ।। ୧୮ ।।

କଳକଣ୍ଠ କାରଣ୍ଡବ ଧ୍ୱନି ପ୍ରଚଣ୍ଡ,
ଟିଟ୍ଟିଭ ସମୁହ କାହିଁ ହୁଅନ୍ତି ଭଣ୍ଡ । ୧୯ ।।

କାମିନୀ ପ୍ରାୟେ କାଳିନ୍ଦୀ ଦିଶେ ସୁଷମ,
ଝଲପି ଅମ୍ବୁଜ ତାର ନୟେ ବଦନ ।। ୨୦ ।।

ନୀଳ ଇନ୍ଦିବର ବେଣୀ ନୟନ ଶୋଭା,
ଯାହା ଦେଖି ମୁନି ମନ ହୋଇବ ଲୋଭା ।। ୨୧ ।।

ତଟ ପାଶେ ଭୃଙ୍ଗାବଳୀ ମଧୁର ଲୋଭା,
ରୁଚିର ଭ୍ରୂଲତା ଛବି ହ୍ରା-ଏକ ଶୋଭା ।। ୨୨ ।।

ଶଇବାଳ ତା କେଶ ମୃଦୁଳ କାନ୍ତି,
ମୃଣାଳ ଭୁଜ କି କୋକନଦତା ପାଣି ।। ୨୩ ।।

ତାମରସ କେଶ ତାର କୁଚ ସୁନ୍ଦର,
ନିବଳ ତରଙ୍ଗ ରୋମ ବଳି ଭ୍ରମର ।। ୨୪ ।।

ତଥିନାଭି ଆବୃତ ଜେ ଛୁଟର କଏ,
ଜଘନ ପୁଳିନ କାନ୍ତ ନିଦଶ ମୋହେ ।। ୨୫ ।।

ମଞ୍ଜୁ ମଞ୍ଜୀର ଧ୍ୱନି ତହିଁରେ ମଙ୍ଗଳ,
ମୀନ କେତନରେ ତା ହୃଦୟ ଦୁର୍ବଳ ।। ୨୬ ।।

ଜଳନିଧି ଯାରେ କି ସେ ଦେଇଣ ମନ,
ତେଣୁ ବେନି କୂଳ ତେଜି ଗମେ ବହନ ।। ୨୭ ।।

ଏସନ ଯମୁନା ତଟରେ ଶ୍ରୀ ବୃନ୍ଦାବନ,
ନାନା ଦ୍ରୁମମାନଙ୍କରେ ଅତ୍ୟନ୍ତ ଘନ ।। ୨୮ ।।

ଅତି ଘନ ହୋଇ ଦିଶେ ତମାଳ ମାଳ,
ପ ଶରେ କପିତ୍ଥ, ତାଳ, ରସାଳ, ଶାଳ ।। ୨୯ ।।

ଦେବଦାରୁ, ଅଗୁରୁ ଯେ ବିବିଧ ତରୁ,
ଫଳ ପୁଷ୍ପ ଭରେ ଶାଖା ଦିଶନ୍ତି ଗରୁ ।। ୩୦ ।।

ଶୁକ ସାରୀ କପୋତ ଯେ କରନ୍ତି ଧ୍ୱନି,
ପୁଷ୍ପ ରଜେ ପୂରଣ୍ଟି ବନ୍ଧୁର ଅବନୀ ।। ୩୧ ।।

ନାନା ପୁଷ୍ପ ଗନ୍ଧ ଯେ କରଇ ପ୍ରଚୁର,
କାଳିନ୍ଦୀ ନଦୀରୁ ଯେ ହୋଇଛନ୍ତି ବାହାର ।। ୩୨ ।।

ଧୀରେ ଧୀରେ ବହଇ ଯେ ମନ୍ଦ ସମୀର,
ଭୃଙ୍ଗ ଶବ୍ଦ ନୃତ୍ୟନ୍ତ ସମୋଦଭର ।। ୩୩ ।।

ତମାଳ ତରୁକୁ ଘନ ପ୍ରାୟେ ବିଚାରି,
ପୁଚ୍ଛଭର ଟେକି ସଙ୍ଗେ ଯେବେ ମୟୂରୀ । ୩୪ ।।

ମନୋଜ୍ୱଳ ମଣି ତାହା [illegible] ଚମନ୍ତ୍ର ।
ନୃତ୍ୟ ରସ ଭରେ କେହ୍ନ ଟସି ପଡ଼ନ୍ତି ।। ୩୫ ।।

ନବାମ୍ବେ ନୀଳ ଅମ୍ବୁଜ ପଟଳ ଧାର,
　　　　ଖସି ପଡ଼ୁଛି କି ଏ ମଦନ ଉପର ॥ ୩୬ ॥
ଯହିଁ ସବଦନେ ଋତୁଗଣ ବିଶ୍ରାମ,
　　　　ତହିଁ ଯାଇ ମିଳିଲେ ରମଣୀ ଉତ୍ତମ ॥ ୩୭ ॥
କେଶର, କୁସୁମ, କୁରୁଆନା, ମାଳତୀ,
　　　　ପୁନ୍ନାଗ, ସେବତୀ, ବାସ ଚମ୍ପକ ଜାତି ॥ ୩୮ ॥
ମଲ୍ଲୀ, ବଲ୍ଲିକା, ଜେଲ ଯେ ନବ ମାଳିକା,
　　　　ତୋଳନ୍ତି ବିବିଧ ପୁଷ୍ପ ଗୋପ ବାଳିକା ॥ ୩୯ ॥
ଏମନ୍ତେ ଦେଖିଲେ ନବ ନିକୁଞ୍ଜ ବନ,
　　　　ଅନଙ୍ଗ ସ୍ୱଏର କି ଏ ବଡ଼ ଭବନ ॥ ୪୦ ॥
ନବଦଳ ଲଳିତ ପବନେ ଚଳିତ,
　　　　କାମ କେତନ ପରିଏ ଦିଶେ ଶୋଭିତ ॥ ୪୧ ॥
କେବଣ ପୁନାଗେ ଶୋଭେ ଲବଙ୍ଗଲତା,
　　　　କାନ୍ତକୁ ଆଶ୍ଳେଷ କଲା କି ଏ ବନିତା ॥ ୪୨ ॥
ସହକାର ପାଦପ ମଞ୍ଜରୀ ଧରିଛି,
　　　　କାନ୍ତଲତା ଆଶ୍ଳେଷେ ପୁଲକ ପୂରିଛି ॥ ୪୩ ॥
ଅଶୋକ ପୁଷ୍ପରେ କୁଞ୍ଜ ହୋଇଛି ଲୋହିତ,
　　　　ଅନୁରାଗୀ କାନ୍ତା କୋଳେ କାନ୍ତ କି ଶୋଭିତ ॥ ୪୪ ॥
କେବଣ ବ୍ରତତୀ ଅତି ଅରୁଣ ଦଳେ,
　　　　କାନ୍ତ ଭୃଙ୍ଗ ମାନଭର ହୋଇଛି କି ସେ ॥ ୪୫ ॥
ପୁଷ୍ପବତୀ ହୋଇଅଛି କେବଣ ବଲ୍ଲୀ,
　　　　ମନ୍ଦ ବାତେ କମ୍ପେ ଶୀଘ୍ର ବାରଇ ଅଳି ॥ ୪୬ ॥
କେଉଁ ପୁଷ୍ପ ଭୃଙ୍ଗ ଚୁମ୍ବି ହୋଏ ବାହାର,
　　　　ପରାଗେ ଧୂସର ଅଙ୍ଗ ଦିଶେ ତାହାର ॥ ୪୭ ॥
ଆବର ଲତାର ସନ୍ନିକଟକୁ ଗଲା,
　　　　ତେଣୁ କି ସେ ପୁନ ମୁରଛି ମାନିନୀ ହେଲା ॥ ୪୮ ॥

ଏମନ୍ତେ ଯେ ନାନା ଲତା ପୁଷ୍ପ ତୋଳନ୍ତ,
ଗୁନ୍ଥନ୍ତି ଦାମ ଗୋପୀକା ବାଳା ମିଳଣ ॥ ୪୯ ॥

ପୀତ ହରିତ ଅସିତ ଲୋହିତ ସିତ,
ଏକଅରକର ମାଳା କଲେ ସଞ୍ଜାତ ॥ ୫୦ ॥

କବରୀ ସାଜ ହୋଇଲେ କୁସୁମ ବେଶ,
ଚଉପ୍ରାନ୍ତର ଲତାମାନ ଗୁମ୍ଫି ହରଷ ॥ ୫୧ ॥

କର ସାର କଙ୍କଣ କନକ ପ୍ରସୂନ,
କରେ ତୋଳ କୋମଳେ କରନ୍ତି ଗମନ ॥ ୫୨ ॥

ଗଣିକା ଲତିକା ଦେଖି ତୋଳନ୍ତି ବାଳୀ,
ନୀପ ମୂଳେ ଦେଖିଲେ ସେ ଶ୍ରୀ ବନମାଳୀ ॥ ୫୩ ।

ନବ ଜଳଧର ଶ୍ୟାମ ସୁନ୍ଦର ତନୁ,
ସୁସ୍ୱରେ ଅଧର ତଟେ ପୂରଇ ବେଣୁ ॥ ୫୪ ॥

ତୃଣ ନ ଚରନ୍ତି ଧେନୁ ଶୁଣିଣ ଧ୍ୱନ,
ଅପେ ଟେ ଦେଖିଲା ବୃଷଭାନୁ ନନ୍ଦନୀ ॥ ୫୫ ॥

ଶ୍ରୀକୃଷ୍ଣ ବଦନେ ବାଳୀ ନୟନ ଢାଳି,
ମାର ଶରଘାତେ ତାର ପାଦ ନ ଚଳି ॥ ୫୬ ॥

ଝଳିଲ କୁସୁମ ବଣି ପାଦେ ବନ୍ଧିଲ,
ଦରଶନ ଛଳେ ସେ ପଥକୁ ରହିଲ ॥ ୫୭ ॥

ଏ ସମୟେ ତହିଁ ଗୋକୁଳ ମଣି,
ନୟନରେ ଦେଖିଲେ ରମଣୀ ସିହାଣି ॥ ୫୮ ॥

ବୃଷଭାନୁ ନନ୍ଦନୀ କଟାକ୍ଷ ଘାତେଣ,
ଗୋକୁଳଚନ୍ଦ୍ରର ମୁଖ କମ୍ପ ଲୋଚନ ॥ ୫୯ ॥

ବେନି ଜନ ଚକ୍ଷୁ ସହିଁ ଏକ ହୋଇଲେ,
ପଞ୍ଚମରେ ମନୋଜ ବଶିଖ ବହିଲ ॥ ୬୦ ।

ରାଧା ନୟନେ ରହେ ଶ୍ୟାମଘନ ମୂରତି,
କୃଷ୍ଣର ନୟନେ ରହିଲ କନକଗୋରୀ ॥ ୬୧ ॥

ହସ୍ତରୁ ଖସି ପଡ଼ିଲା କନକ ବେଣୁ,
ତେଜିଲା କୁସୁମ ମାଳା ତେଣୁ ସୁତନୁ ॥ ୬୨ ॥
ମୂର୍ଚ୍ଛିଭୂତ ହୋଇଲା ସେ ରମଣୀବର,
ଅନ୍ତରେ ଦହଇ ମୀନକେତନ ଶର ॥ ୬୩ ॥
ଧୀର ଧୀର ହୋଇ ସେ ଅବଶ ଗୃଳଇ,
ଶିଥିଳେ ସଖୀର କର କରେ ଧରଇ ॥ ୬୪ ॥
ହରଷ ବସ୍ତ୍ରସ୍ତେ ହୋଇ କରେ ଗମନ,
ଏମନ୍ତେ ମିଳିଲା ବାଳୀ ନିଜ ସଦନ ॥ ୬୫ ॥
ଚନ୍ଦ୍ର ଚନ୍ଦନ କର୍ପୂର ବିଷ ମଣିଲା,
ହାର ଭାର ମଣି କୁଚ ତଟୁ ତେଜିଲା ॥ ୬୬ ॥
ପଲଙ୍କ ତେଜିଣ, ଭୂମି ତଳ୍ପ ସେ କର,
ଦିନୁଦିନ କ୍ଷୀଣ ତନୁ ହେଲା କଶୋଷା ॥ ୬୭ ॥
ଦୂତିକା ବୋଲଣ ପ୍ରିୟ ସଖୀ ତାହାର,
କମିତେ ନୁହଇ ରାଧା ପାଶୁ ଅନ୍ତର ॥ ୬୮ ॥
ମନେ ବିଚାରଇ ଯେହ୍ନ କେମନ୍ତ ଗତି,
ଅଶନ ବସନ ତ ତେଜିଲା ଯୁବତୀ ॥ ୬୯ ।
ଶନ୍ତଇ ସଜନୀ ମୋର କ୍ଷୀଣ ତ ହେଲା,
ହସ ରସ କଉତୁକେ ମନ ନ ଦେଲା ॥ ୭୦ ॥
ନଣ୍ଟୋହେଁ ଦେଖଇ ଯେହ୍ନ ତମାଳ ତରୁ,
ଚନ୍ଦ୍ରକାଳମଣି ଠାରେ ସେହ୍ନ ତ ଗୁରୁ ॥ ୭୧ ॥
ଯେହ୍ନ ବିନୁ ବୀଡ଼ା ବେଳ୍ହିଁ ହେଲା ବମନ,
ରାଜ ଢବା କରୁଥାଇ କାହାରେ ଧ୍ୟାନ ॥ ୭୨ ॥
ନଷ୍ଟେସ୍ତୁ ଦେଖିଲା ଏ ଦେବକୀ ନନ୍ଦନ,
ଆନ କେ ଅବା ହରିବ ଏହାର ମନ ॥ ୭୩ ॥
ନବଘନ ଯେସନେ ଚାତକ ପିପାସା,
ଜାଣିଲା ଟମା ସଖୀ କଲା ଶ୍ରୀକୃଷ୍ଣେ ଆଶା ॥ ୭୪ ॥

ସୁମନ ସୁନ୍ଦର ମନୋହର ମୂରତି,
ନଚାଇଲେ ନବର୍ତ୍ତିଇ ନବଯୁବତୀ ।। ୭୫ ।।

ଅନୁକ୍ଷଣେ ମଦନ ହୃଦୟୁ ଦହିଲା,
ଦଣ୍ଡପୁ ଶ୍ରୋଜନ ବାଳୀ ସବୁ ଚଞ୍ଚଳ ।। ୭୬ ।।

ଏତେ ଚନ୍ଦ୍ର ସହଚରୀ ହେଲ ଅନ୍ତର,
କେମନ୍ତେ ପ୍ରସନ୍ନ ହେବେ ନନ୍ଦକୁମର ।। ୭୭ ।।

ଶ୍ରୀକୃଷ୍ଣର କେଳି ଏହୁ ଅମୃତ ରସ,
କର୍ଣ୍ଣେ ପିଇ ସନ୍ଥଜନେ ହୁଅ ହରଷ ।। ୭୮ ।।

ଆଶାସ ବହାଶ କୃଷ୍ଣ ଚରଣ ଦୁଇ,
ନୃପ ଧନଞ୍ଜୟୁ ଭଞ୍ଜ ସତତ ଧ୍ୟାଇ ।। ୭୯ ।।



## ଦ୍ୱିତୀୟ ଛାନ୍ଦ

(ରାଗ— କେଦାର ଚକ୍ରକେଳୀ ବାଣୀରେ)

ଏଥୁ ଅନନ୍ତରେ ଶୁଣ ସୁଜନ,
ରାଧାକୃଷ୍ଣ କେଳିରସ ବିଧାନ ।। ୧ ।।
ଏକଦିନେ ବୃଷଭାନୁଙ୍କ ସୁତା,
ସ୍ୱପ୍ନେ କୃଷ୍ଣଙ୍କୁ ଦେଖିବାରୁ ଚିନ୍ତା ।। ୨ ।।
ଦୂତୀ ଆଗେ କହଇ ଧୀର ବାଣୀ,
ଆଜ ରଜନୀ ଅପୂର୍ବ ମିଳଣୀ ।। ୩ ।
ତୁ ମୋ ପ୍ରାଣୁ ଅଧିକ ପ୍ରିୟ ସଖି,
ତୋର ମୋର ଅନ୍ତର ନୋହେ ଦେଖି ।। ୪ ।।
ତୋର ଆଗରେ କରିବି ପ୍ରକାଶ,
ମୋର ଅନ୍ତରଗତ ବାଧା ବିଶେଷ ।। ୫ ।।
ଶୁଣ ଗୋ ନିଶ୍ଚଳ ମନେ ଶୁଣ ସଖୀ,
ଆଜ ସ୍ୱପ୍ନେ ମୁଁ ଯାହା ଅଛି ଦେଖି ।। ୬ ।।
କୃଷ୍ଣ କଜ୍ଜଳ ଅଞ୍ଜନ ଘନପୁଞ୍ଜ,
ହେଲେ ଗଞ୍ଜଇ ତାହାର ଶ୍ରୀଅଙ୍ଗ ।। ୭ ।।
ହସ୍ତେ ଧେନଛି ମୋହନ ମୁରଲି,
ମୋର ପୁରତେ ଭ୍ରମନ୍ତେଣ ମିଳି ।। ୮ ।।
ମୋର ଶଯ୍ୟା ଅଙ୍କେ ଧୀରେ ପ୍ରବେଶ,
ପୁଣ ଅବଲୋକନେ ହସ ହସ ।। ୯ ।।
ପକ୍ୱ ବିମ୍ବ ସଦୃଶ ଦନ୍ତଛଦ,
ପଦ୍ମରାଗକୁ ନିନ୍ଦା କରେ ରଦ ।। ୧୦ ।।
ନାସା ନିନ୍ଦା କରେ ମାର ତୁଣୀର,
ଗଣ୍ଡ ବିମ୍ବିଦ ଫଳକ ରୁଚିର ।। ୧୧ ।।
ଶ୍ରୁତି ତଟେ କୁଣ୍ଡଳ ବେନି ଶୋଭା,
ମୁଖ କୋଟି ଶଶାଙ୍କ ଜିଣି ଆଭା ।। ୧୨ ।।

ମତ୍ତ ଚକୋର ମନୋହର ନୟନ,
ମୀନ ଚଞ୍ଚଳ ଲୋଚନ ଖେଳଇ ।। ୧୩ ।।

କାମ କମାନଟି ଯଷ୍ଟି ଥୋଇଛନ୍ତି,
ତେଣୁ ପାପେ ଭ୍ରୁରୁ ବେକ ମୋଡ଼ୁଛି ।। ୧୪ ।।

ଅର୍ଦ୍ଧ ଶଶିଖଣ୍ଡ ପ୍ରାୟେ ଲଲାଟ,
ମଧ୍ୟ ଶାର ଚିତା ଶୁଭ୍ର ପ୍ରକଟ ।। ୧୫ ।।

ନୀଳ କୁଟିଳ ଚିକ୍କଣ ଚିକୁର,
ନବ ଜଳଧର ରୁଚି ରୁଚିର ।। ୧୬ ।।

ତାହା ମୂଳେ ସୁନ୍ଦର ଚୂଡ଼ା ଭାର,
ଶିଖିପୁଚ୍ଛ ତହିଁପରେ ରୁଚିର ।। ୧୭ ।।

ବନ୍ଧୁ ଘଟଣା ଭିତରୁ ବାହାରି,
ତାକୁ ଦେଖି ଚିତ୍ତ ମୋର କାତର ।। ୧୮ ।।

ଗ୍ରୀବା ମାର ଜପୁ କମ୍ବୁ ନନ୍ଦନ,
ଭୁଜ ନାଗରାଜା ଗର୍ବ ଗଞ୍ଜଇ ।। ୧୯ ।।

ହୃଦେ ଲୁଚଇ ଚାରୁ ମୋତି ଦାମ,
ସୁର ସୁତା ଜାହ୍ନବୀ କି ସଙ୍ଗମ ।। ୨୦ ।।

ନାଭି ପ୍ରଫୁଲ୍ଲ ଅମ୍ବୁଜ ରୁଚିର,
ରୋମ ରାଜି ଅଳିରାଜି ସୁନ୍ଦର ।। ୨୧ ।।

ଶ୍ୱାସ ମଧୁର ସୁଗନ୍ଧ କେଉର,
ତେଣୁ ଊର୍ଦ୍ଧ୍ୱମୁଖେ କଏ ବାହାର ।। ୨୨ ।।

ସ୍ଥାଣୁ କର ଡ଼ଣ୍ଡ୍ରମ ନନ୍ଦେ କଟି,
ନବରଙ୍ଗ ସୁନ୍ଦର ପୀତ ଧଟୀ ।। ୨୩ ।

ହେମ କିଙ୍କିଣୀ ଶୋଭଇ ତହିଁରେ,
କଟିପ କଳ ମଞ୍ଜୁଳ ଧ୍ୱନି କରେ ।। ୨୪ ।।

କରି କର, କରଭ ନନ୍ଦେ ଊରୁ,
ହେମ ନୂପୁର ଧ୍ୱନି ଅତି ଚାରୁ ।। ୨୫ ।।

କମାଁ ପାଦ ପଙ୍କଜେ ଲେଞ୍ଜ ହୋଇ,
ଧ୍ୱନ କରନ୍ତ ମଧୁବ୍ରତେ ରହି ॥ ୨୬ ॥
ଶୁଦ୍ଧ ମୃଦୁଳ ପଲ୍ଲବ ଚରଣ,
ନକ୍ଷ ଶୋଭା ସିନ୍ଦୁର ମଣିଗଣ ॥ ୨୭ ॥
ମୋର ପାଶେ ବସି ମୃଦୁ କହିଲେ,
ପଦ୍ କରେ ମୋ ଚିବୁକ ଧଇଲେ ॥ ୨୮ ॥
କୋଟି ଚନ୍ଦ୍ର ଚନ୍ଦନ ଚନ୍ଦ୍ରକର,
ଚହୁଁ ଶୀତଳ ମଣିଲି ମନର ॥ ୨୯ ॥
ସଖୀ କହଇ ଆଉ ଏକ ରସ,
ପୁଷ୍ପ ଦାମ ରଚିଲା କେଶ ପାଶ ॥ ୩୦ ॥
ମୋର ବନୋଇ ବହୁତ କହିଲେ,
ପୁନଃ ପୁନ ସେ ଆଲିଙ୍ଗନ କଲେ ॥ ୩୧ ॥
ନିଦ୍ରାଭଙ୍ଗେ ଉଠିଲି ଗୋ ସଜନି,
ମୋର ମସ୍ତକେ ପଡ଼ିଲା ଅଶନି ॥ ୩୨ ॥
କାହା ଆଗେ କହିବି ଏ ବେଦନା,
ତେଣୁ ପୁଚ୍ଛା କଲି ମୀନ ଲୋଚନା ॥ ୩୩ ॥
କାହ୍ନା ନନ୍ଦନ ସେହୁ ପ୍ରାଣ ସଖୀ,
ତାଙ୍କୁ ନଦେଖିଣ ମୁହିଁ ନର୍ମୀଖୀ ॥ ୩୪ ॥
ତାଙ୍କୁ ଦେଇଣ ପ୍ରାଣ ରଖ ମୋର,
ଦୂତୀ ଧନ୍ୟସ୍ତୁ ତୋ ବେଦ ପୟୁର ॥ ୩୫ ॥
ଚନ୍ଦ୍ରାବଳୀ କାର୍ପଣ୍ୟ ଦେଖି ସଖୀ,
କହେ ଚିନ୍ତା ନକର ଗୋ ସୁମୁଖୀ ॥ ୩୬ ॥
ଯହିଁ ଥିଲେ ଅବଶ୍ୟ ଦେବି ଆଣି,
ପ୍ରାଣ ରଖି ଥିବୁ ମୀନ ଲୋଚନୀ ॥ ୩୭ ॥
ଯେତେ କହିଲୁ ତାର ରୂପ ଗୁଣ,
ନାହିଁ ନାଗ ନରର ଭୁବନ ॥ ୩୮ ।

ଯେତେ ସୁବାଛନ୍ତି ମନ୍ମଥମୋହନ,
ନାହିଁ ତାର ସଦୃଶ୍ୟ ଆନ ଜନ ॥ ୩୯ ॥

ତୋର ମନ ବଳନ୍ତି ଯାହା ଚହିଁ,
ତାହା କହଇ ଶୁଣ ସ୍ଥିର ହୋଇ ॥ ୪୦ ॥

ଯଦୁ ବଂଶର ସେ ଆନନ୍ଦ କର,
ଆସି ବଢ଼ିଲେ ଏବେ ନନ୍ଦ ଘର ॥ ୪୧ ॥

ତାର ଗୁଣ କହି କେହୁ ପାରିବ,
କୋଟି କଲ୍ପ ତାର ନାଶ ଯିବ ॥ ୪୨ ॥

ଚନ୍ଦ୍ର ନୀଳମଣିକ ନନ୍ଦ ତନୁ,
ତାଙ୍କ ରୂପକୁ ସମରୁ ସୁତନୁ ॥ ୪୩ ॥

ତାଙ୍କଠାରେ ତୋ ଯେବେ ମନ ଭବେ,
ସଫା ତେଜଣ କହ ନଷ୍ଟେ ଏବେ ॥ ୪୪ ॥

ମନ କଥା ଠହୁଁ ସଖୀ କହିଲ,
ବୃଷଭାନୁ ସୁତା ଲଜ୍ଜା ପାଇଲେ ॥ ୪୫ ॥

ଅଙ୍ଗେ ସାତ୍ତ୍ୱିକ ହୋଇଲା ତାହାର,
ଘନ ଘନ କମ୍ପେ ତନୁ ଅଧର ॥ ୪୬ ॥

ଗଣ୍ଡ ପାଳି ପୁଲକକୁ ଭଜିଲା,
କମ୍ବୁ କଣ୍ଠୁ ସ୍ୱେଦ ବିନ୍ଦୁ ଝରିଲା ॥ ୪୭ ॥

ଗଦଗଦ କଥା କହି ନପାରି,
ଏହୁ ସନ୍ତ ଜାଣିଲ ସହଚରୀ ॥ ୪୮ ॥

ନଷ୍ଟ କୃଷ୍ଣ ତହୁଁ ଚିତ୍ତ ରହିଲା,
ଯେତେ ଚନ୍ଦ୍ର ସଖୀ ଭୂଜ ହୋଇଲେ ॥ ୪୯ ॥

ନୀଳମଣି ଧର ପ୍ରଭୁ ଚରଣ,
ଦୀନ ନୃପ ଧନଞ୍ଜୟ ଶରଣ ॥ ୫୦ ॥



## ତୃତୀୟ ଛାନ୍ଦ

(ରାଗ—ବରାଡ଼ି)

ସଖୀ ବଚନ ସେ ଦେଖି ସୁଦଶୀ,
ଚଳିଲ ଯହିଁ ଶ୍ୟାମ ବେଣୁଧାରୀ,
ଦର୍ଶନ କରି ଶିରେ କର ଦେଲ,
ରାଧା ବଚନ ଶ୍ରୀମୁଖରେ କହିଲ,
    ହେ ମନ୍ଦର ଧାରୀ,
ଚନ୍ଦ୍ରାବଳୀର ମୁଁ ସଙ୍ଗ ପରିହରି ।। ୧ ।।

ଶୁଣି ଅଚଳା ଅଟଇ ଅବଳା,
ଅଙ୍ଗେ ସିନ୍ଧୁ ତରିବାକୁ ଭେଳା,
ଚଞ୍ଚଳ କୁରଙ୍ଗ ନେତ୍ର ସୁରଙ୍ଗ,
ଚାହିଁଲେ ଯୋଗେଶ୍ୱର ଦମ୍ଭଭଙ୍ଗ,
    ହେ ନନ୍ଦନନ୍ଦନ,
ତମ ତନୁ ଖୀଣ ରମାରତନ ।। ୨ ।।

ସକଳ ଗୁଣରେ ଦେହ ଆକାର,
ଦେଖି ଆନନ୍ଦ ହୋଏ ପୁଷ୍ପଶର,
ମନେ ଏହନ କରଇ ବିଚାର,
ଏହା କେନ ଜିଣିବ ମୁଁ ପୁରନ୍ଦର,
    ହେ ମୁରଲୀ ଧର
ଧାତା ରଚନା ଅତନୁ ବାହାର ।। ୩ ।।

କୁମ୍ଭି କୁମ୍ଭ ଶୋଭା ଜିଣି ଉରଜ,
ଯାହା ଦେଖି ଗର୍ବ କରେ ମନୋଜ,
ତନୁ ମୃଦୁଳ ଖୀଣ କଟି ତାର,
ଛୁଟି ଯିବାକୁ ଡରେ ରତିବର,
    ହେ ନବ ନାଗର,
ତୁମ ପାଦେ ଚିତ୍ତ ଦେଲ ମୁଁ ସରଣ ।। ୪ ।।

ଅଚନ୍ତୁ ତାର ତନୁ ତନୁ କଲ,
ପ୍ରିୟ ସଖୀ ବୃନ୍ଦେ ରସ ତେଜିଲ,
ଶୟନ ଭୋଜନ ମଣିଲା ବିଷ,
ଆବର ନାହିଁ ତାର ସୁଖ ଲେଶ,
ହେ ଦୟା ସାଗର,
ଏକା ନେସ ଭୁବନର ସାଧାନ ଘର ॥ ୫ ॥

ଚବଳ ଟଙ୍କାରେ ଯେବେ ଶୁଣଇ,
ଦୃଢ଼ ବଦ ପ୍ରାପ୍ୟେ ତାକୁ ମଣଇଁ,
ହଳା ସମ ମଣେ ଅଗୁରୁ ପଂକ
ଚଣ୍ଡକର ସମ ମଣେ ମୃଗାଙ୍କ,
ସେ ସହଜେ ବାଳା,
କେମନ୍ତେ ସମ୍ଭବ ଅନଙ୍ଗ ଜାଳା ॥ ୬ ॥

ଯେବେ ଶୁଣଇଁ କଳକଣ୍ଠ ଧ୍ୱନି,
ଅଶନି ସମାନ ମଣେ ସଜନୀ
ଶିରଷ ମାଳା ଅଙ୍ଗେ ଦେଲେ ନେଇ,
ବେଗୀ ବୋଲିଣ ସତ୍ତ୍ୱରେ ତେଜଇ,
ହେ କିଶୋର ବର,
ବାରେ ସଖୀଙ୍କ ମୋର କୃପା କର ॥ ୭ ॥

ଯେବେ ବହଇ ମଳୟ ସମୀର,
ଅଂଶୁକେ ତାହା କରଇ ନିବାର,
ମଳୟ ପଙ୍କ ହୃଦେ ଦେଲେ ନେଇ,
ଶିବ ସ୍ମୃତେଷ୍ଟି ବୋଲିଣ ଛନ୍ଦଇ,
ସେ ଦବଦ ନସ୍ତି ।
କହ୍ନିଁ ନ ଜାଣଇଁ ବୃନ୍ଦାବନୀ ॥ ୮ ॥

ଏକାନ୍ତେ ବାଳା ଗୃହେ ବସିଥାଇ,
ଅଗୁରୁ ନିର୍ଯ୍ୟାସ ଦେହେ ଲେପଇ,
ତୁମ୍ଭ ସ୍ୱରୂପ ସେ କରେ ଲୋଚନ,
ପ୍ରତ୍ୟକ୍ଷ ମଣେଁ ସ୍ୱପ୍ନ ରଚନ,
କହନ୍ତେ ଆଶ୍ଳେଷ,
କ୍ଷିତିରେ ପଡ଼ି ଭଜଇ ବିରସ ॥ ୯ ॥

ମୁଁ କିସ କହିବ ତା କଷ୍ଟ ପୁଣ,
ହିମ ରୁଚିର ଏ କଳା ସମାନ,
ଆସକତ ତାର ଯେତେ ତା ଜାଣ,
ଗଳୁ ମଣୁଅଛି କ୍ଷୀଣ ବସନ,
ହେ ଲାବଣ୍ୟ ରାଶି,
ମୋର ଗମନ ପନ୍ଥ ଥିବ ବସି ॥ ୧୦ ।

ଶୁଣଇଁ ଯେବେ ସେ ମଧୁର ଧ୍ୱନ,
ତକ୍ଷଣେ ମୋହ ଲଭଇ କାମିନୀ;
ଚଞ୍ଚଳ କୁରଙ୍ଗ ଭଣିତ ଶରେ,
ବାଜନ୍ତେ ଯେହ୍ନେ ପଡ଼ଇ ସତ୍ୱରେ,
ହେ ଗୋପୀ ମୋହନ.
କହଂ ତେଜଇ ସୁନ୍ଦର ଜୀବନ ॥ ୧୧ ॥

ନୟନୁ ବାଷ୍ପ ପଡ଼େ ଅନୁକ୍ଷଣ,
ନବ ଘନ ତେଜି କିବା ଜୀବନ,
ମଳ କୁଟିଳ ମୃଦୁଳ ଚିକୁର.
ଫୁଟି ଉରଜ ଦିଶେ ଶୋଭାକର,
ଏସନ ଚରିତ୍ର,
ସଖୀ ଲୋଟଭକ ତମ ହେମ ଗୋଷ୍ଠ ॥ ୧୨ ॥

ଶରଦ ଜ୍ୟୋତ୍ସ୍ନା ସହ୍ୟ ନ ପାରିଲା,
ମନ ବଚନ ତୁମ୍ଭରେ ସେ ଦେଲା,
ପାଖେ ସଖୀ ଥିଲେ ଜାଣଇଁ ନାହିଁ,
ଜ୍ଞାନ ହରାଇଲା ପଙ୍କଜ ମୁହିଁ,
ହେ ଜଗତମୋହନ,
ତାହା ସୁମରି ନ ରହେ ଜୀବନ ।। ୧୩ ।।

ପୁନଃପୁନ ବାଳୀ କରେ ପ୍ରଳାପ,
ବୃନ୍ଦାବନ ନବ କୁସୁମ ସ୍ତୂପ,
ବ୍ରଜବଲ୍ଲଭ ହେ ଭକତବନ୍ଧୁ,
ଗୋପୀଜନ ଜୀବ ଲବଣ୍ୟ ସିନ୍ଧୁ,
ହେ ରାଧାରମଣ,
ତୁମ୍ଭ ବିନୁ ସଖୀ ତେଜିବ ପ୍ରାଣ ।। ୧୪ ।।

ବିହ୍ୱଳ ହୋଇ ବୋଲଇ ତରୁଣୀ,
ଆଣିଲୁ କି ସଖୀ ସେ ବେଣୁପାଣି,
ଷପାରେ ପୁଣି ମୁଖ ନମ୍ର କରି,
ପୁଣି ଶୂନ୍ୟରେ ଆଣିଲା କବରୀ,
ଭ୍ରମଇଁ ସତ୍ୱର,
କ୍ଷଣେ ବେଦନ ଖଣେ ହୋଏ ଧୀର ।। ୧୫ ।।

ମୃଗମଦେ ବାଳା ଲେଖେ ଅନଙ୍ଗ,
ନାନା ପୁଷ୍ପେ ପୂଜ କରଇ ରଙ୍ଗ,
କୃପାଣ ସାର... ... ...
ଚରଣ ତଳେ ତାର ନମ୍ର ହୋଇ,
ହେ ମଦନ ରାଏ,
ମୋ ପ୍ରାଣ ରଖି କୃଷ୍ଣ ଭେଟ ଯାଏ ।। ୧୬ ।।

ନବ ତମାଳ ଦେଖନ୍ତେ ତରୁଣୀ,
ମୂର୍ଚ୍ଛିତ ହୋଇ ପଡେ ବସୁନ୍ଧଣୀ,
ସତ୍ୱରେ ତୋଳିଲେ ଆଳୀ ସକଳ,
ସେଚନ କରି ହୋଇଲେ ଆକୁଳ
ଚିନ୍ତିଲେ ତରୁଣୀ,
ଏ କିସ କଥା କହୁଛ ଧରଣୀ ॥ ୧୭ ॥

ମୁଖେ ସିଞ୍ଚିଲୁ ପନିର ଜୀବନ,
କୋମଳେ ବିଞ୍ଚିଲୁ ଝିନ ବସନ,
ଶିଳ ପ୍ରତିମା ସମ ତାର ତନୁ,
ସଭଏଁ ମୁଞ୍ଚିଲୁ ନୀର ନୟନୁ,
ଏହୁଁ ଚନ୍ଦ୍ରମୁଖୀ,
କେମନ୍ତେ ବଞ୍ଚିବ କହ ଗୋ ସଖୀ ॥ ୧୮ ॥

ମଳିନ ଅଙ୍ଗ ତାଗ ନ ଚଳଇ,
ନାସାଗନ୍ଧ ନ ବାରଢ ନୁହଇ,
ଦୁଃଖ ସାଗରେ ବୁଡ଼ିଲୁ ଅବଳା,
ତୁମ୍ଭ ନାବେ ଗଣ୍ଡ ପୁଲକ ଦେଲ,
ଧୃତି ହରିଲେଁ
ନବ ପ୍ରବାଳ ଓଷ୍ଠକ ରଞ୍ଜିଲୁ ॥ ୧୯ ॥

ହଙ୍କ ବଚନୁ ଚେତନ ସୁମୁଖୀ,
ତୁମ୍ଭ ନାମରେ ଅଛି ଜୀବ ରଖି,
ସ୍ମୃତି କହିଲେ ଦୁର୍ଗ ତଳଇ,
ଏତେ ମାତ୍ରେ ଅଛି ରକ୍ଷା ହୋଇ,
ତୁମ୍ଭର ଚିହ୍ନନୁ,
ନିଶ୍ଚୟେ ତନୁ ତେଜିବ ସୁତନୁ ॥ ୨୦ ।

ତେଜ ଆସିଅଛୁ ଯେହୁ ସୁନ୍ଦରୀ,
ମୋର ପଥକୁ ଥିବ ଅନୁସରି
ତୁମ୍ଭେ ନ ଗଲେ ତେଜିବ ଜୀବନ,
ଯେହ୍ନୁ ତୁମ୍ଭ ଦାସୀ ଜଗମୋହନ,
ଶୁଣ ଶିଶଚନ୍ତ,
ଜନ୍ମେ ଜନ୍ମେ ସେହୁ ତୁମ୍ଭ ଯୁବତୀ ॥ ୨୧ ॥

ସହଚରୀ ବାଣୀ ଶୁଣି ମୁରାରି,
ପ୍ରସନ୍ନେ ବୋଲନ୍ତି ଶୁଣ ଚତୁରୀ,
ସଖୀକ ଦେଖିଲୁ କୁଞ୍ଜବନରେ,
ମେଦନୁ ଦହିଲ କୁସୁମ ଶର,
ଶୁଣରେ ସୁକେଶୀ,
ଜାଗ୍ରତେ ନେଲୁ ଆମ୍ଭେ ଢକା ନଶି ॥ ୨୨ ॥

ମନେ ଶଙ୍କାକଲେ ରାଧା ସ୍ୱରୂପ,
ଅଙ୍ଗ ରକ୍ଷଣେ ଦେହେ ପୁଷ୍ପରୂପ,
ହସ୍ତରୁ ଖସି ପଡ଼ିଲ ମୁରଲୀ,
ଅବଶ୍ୟ ତନୁ ହୋଇ ବନମାଳୀ,
ମୂର୍ଛିତ ହେଲେ,
ସନାତନ ଙ୍କର ନନ୍ଦନୁ ମୁଁକେଲେ ॥ ୨୩ ॥

ଶୋକରୁ ସେ କହି ନପାରି ବାଣୀ,
ଧଇଲେ ସଖୀ ବେଗେ ବେନୁପାଣି,
ରାଧା ବଦନ ରୁ କହିଲୁ ଯେତେ,
ତୋ ଆଗେ ମୋ ଦୁଃଖ କହିବି କେତେ,
ଶୁଣରେ ନାଗରୀ,
ଚନ୍ଦ୍ର ଚନ୍ଦନ ମୋତେ ବାଣ କରି ॥ ୨୪ ॥

ଚଳ ସୁନ୍ଦରଙ୍କୁ ଆଣ ସହଚରୀ,
ତା ବିନୁ ଜୀବ କେତେ ଥିବୁ ଧରି,
ଆଜ ଆଣି ଦେବୁ ଶ୍ୟାମାରତନ,
ମୁହିଁ ସୂଚକ ସେତୁ ନବଘନ,
    ଚଳେ ସହଚରୀ,
ନୃପ ଧନଞ୍ଜୟ ଚଳେ ମୁରାରି ॥ ୨୭ ॥



# ଚତୁର୍ଥ ଛାନ୍ଦ

## (ବଙ୍ଗ ବରାଡ଼ି)

ଚନ୍ଦ୍ରାବଳୀ ଅଗ୍ରତେ କହଇ ସହଚରୀ,
ଆଜ ତରୁ ମୂଳରେ ଭେଟିଲି ନରହରି ॥ ୧ ।

ଶୁଣରେ ସଜନୀ ପୂର୍ଣ୍ଣ ଶଶାଙ୍କ ବଦନୀ,
ତାଙ୍କ ଶୋଭା ଦେଖି ଚିତ୍ତ ନ ପାରିଲି ଆଣି ॥ ୨ ॥

ତୋ ରୂପ ପଟ୍ଟରେ ଲେଖି ନିଶ୍ଚଳେ ଗୃହାନ୍ତି,
ଅଭି ତନୁ ଜୀବ ହୋଇଛନ୍ତି ଗୋପୀପତି ॥ ୩ ॥

ମୁଁ ତୋର ସଜନୀ ବୋଲି କଲଇଁ ପ୍ରକାଶ,
ଯେତେକ ବିନତି ହୋଇଲେ କେ କରୁ ତା ଦଶ ॥ ୪ ॥

ଏ ତୋହର ଉଦନ୍ତ କହିଲି ଶୁଣ ଆଳି,
ମାର ଶରେ ଦଳିତ ହୋଇଲେ ବନମାଳି ॥ ୫ ।

ସୁଦାମ ଆଶ୍ରମି ତାଙ୍କ ଛଡ଼ାଇଲା ବ୍ୟଥା,
ଧୃତି ଲଭି ପୁଣି ପଚାରନ୍ତି ତୋର କଥା ॥ ୬ ॥

ନେତ୍ର ମୁଦ୍ରୁ ପୁନଃପୁନ ବହେ ନୀର ଧାର,
କରେ ମୋ କର ଧରନ୍ତେ ହୋଏ ଥରହର ॥ ୭ ॥

ଚନ୍ଦ୍ର ଚନ୍ଦନ ଅଗୁରୁ ଶୀତଳ ପବନ,
ତେଜିଲେ ସୁମନ୍ତ ଦାମ ଶିଖଣ୍ଡ ଆବର ॥ ୮ ॥

ପିକ ବଚନ ଶ୍ରୁତିକ ବିକୃତି ମଣିଲେ,
କୁସୁମିତ ବୃକ୍ଷ ଯା ଦେଖଣ ବେଢ଼ାଇଲେ ॥ ୯ ॥

ପ୍ରବାଳ ପ୍ରବାଳ ପୁଷ୍ପ ଦେଖନ୍ତେ ନିବାରେ,
ଶାରି ଶୁକ ପିକଗଣ ବାଣୀ ଦୂର କରେ ॥ ୧୦ ॥

ତୋ ନାମ କଣ୍ଠରେ ମାଳା କରି ରଖିଛନ୍ତି,
ପୁଣ ପୁଣ ବେଦନ୍ତି ସେ ପୁଣ ସ୍ଥିର ହୋନ୍ତି ॥ ୧୧ ॥

ନବପ୍ରବାଳ ଅଧର ଜମ୍ବୁ ରୁଚି ସନ୍ଧି,
ଦୂରେ ଚଢ଼ିଅଛି ତାଙ୍କ ମୋହନ ମୁରଲି ॥ ୧୨ ॥

ପୁଣି ନମ୍ର ହୋଇ ସେ ଧଇଲେ ମୋର ପାଣି,
ପ୍ରାଣପ୍ରିୟ ବେଗେ ଆଣିଦଅ ତୁ ମିତଣୀ ॥ ୧୩ ॥

ଆଜହୁଁ ମୁଁ ତୋହର ହୋଇଲି ଦୂତୀ ଜାଣ,
ଚନ୍ଦ୍ରମୁଖୀ ରାଧା ଦେଇ ରଖ ମୋର ପ୍ରାଣ ॥ ୧୪ ॥

ମନ୍ଥର ନ କର ଚାଲ ଯିବା ଗୋ ମିତଣୀ,
ଅଧୀନ୍ତ ମଧୁର ଦେଖ ଏ ମଧୁର ବାଣୀ ॥ ୧୫ ॥

ଏସନ ଉଚିତ କେଣ ହୁଅଗୋ ସୁନ୍ଦରୀ,
ମତେ ଜାଳରେ ଢୋଉଁଅ ଚିକକ କବରୀ ॥ ୧୬ ॥

ନବ ଦଗ୍ଧ ହେମ ନିନ୍ଦେ ଏ ତୋର ଶରୀର,
ପରିହରି କର ବେଗେ ରୁଚିର ଅମ୍ବର ॥ ୧୭ ॥

ସକଳ ଶୋଭରେ ଭନୁ ଦୃଶ୍ରଁଜର ବାଳୀ,
ଯେସନେକ ମୋହିତ ହୋଇବେ ବନମାଳୀ ॥ ୧୮ ॥

ସଖୀ ବାଣୀ ଶୁଣି ରମା ହୋଏ ଦିବ୍ୟ ବେଶ,
ନୃପ ଧନଞ୍ଜୟ ଭଞ୍ଜ ଏ କୃଷ୍ଣର ଦାସ ॥ ୧୯ ॥



## ପଞ୍ଚମ ଛାନ୍ଦ

(ରାଗ-କଳସା)

ଏଥୁ ଅନନ୍ତରେ ଶୁଣ କୁତୂହଳ ଚୟ,
ଅଭ୍ୟାର ଆଦେଶ ବାଳା ରଞ୍ଜିଲ ସୁବେଶ ।
ଶଶୀ କରଣେ ମଧୁର ମଧୁର ଯାମିନୀ,
ତେଣୁ ଉତ୍ସୁକ ବିଶେଷ ମାନସ କାମିନୀ ॥ ୧ ॥
ନବଘନ ଜ୍ୟୋତି ଗୁରୁ ଚିକୁର ସାଜିଲା,
ତଥିପରେ କ୍ଷୁଦ୍ର ମୋତି ଜାଲି ଆଚ୍ଛାଦିଲା ।
ଯେମନ ବଶିଲା ଶୋଭା ନ ହେବ ତା କହି,
ନଭେ କି ଉଦ୍ଭିଲେ ତାରା ଚୟ ସ୍ଥିର ହୋଇ ॥ ୨ ॥
ତଥିମାନେ ବିବିଧ କୁସୁମମାଳା ରଞ୍ଜି,
ତଥିପରେ ଲୋଭେ ତହିଁ ଚଞ୍ଚରୀକ ଗୁଞ୍ଜି ।
ଚନ୍ଦ୍ରାର୍ଦ୍ଧ ଭାଲରେ ମଳୟୁର ଛଟା ଶୋଭା,
ସୁଧା ଆଶେ କିବା କଳକଣ୍ଠ ତହିଁ ଲୋଭା ॥ ୩ ॥
ନବ ମୋତି ବାମ ଲଲାଟରେ ଦିଶେ ଝଳ,
ମଦନ କମାଣେ କି ରଞ୍ଜିତ ଗଣ୍ଡମାଳ ।
ହିରା ସାରନାଥ ବେନି ଶ୍ରବଣ ବିହିତ,
ମୁକ୍ତପଦ୍ମ ପାଶେ କିବା ଶଶୀ ଅଦଭୁତ ॥ ୪ ॥
ଚୁଚର ନାସିକା ତାର ନିରୁପମ କାନ୍ତି,
ତଥିରେ ଭୂଷିତ ତାର ତରଗଜ ମତି ।
କିବା ତ୍ରିଭୁବନ ଜୟୁ ମଦନ ତୂଣୀର,
ସାପୁ କର ହିରା ପୁଂସ ହୋଇଛୁ ବାହାର ॥ ୫ ॥
ସର୍ବାଙ୍ଗରେ ମଳୟଜ ଲେପିଲା ସୁନ୍ଦରୀ,
ଦିଯଜ ଅଭ୍ର କି ଦେଉଁ ଭାଇଲା ଭ୍ରମ କରି ।
ନବ ମୋତିମାଳା ବାଳା ଉରଜେ ରଚିଲା,
ଝାଣ୍ଡୁ ଶିଖରେ ଭଗୀରଥୀ ଧାର କି ଶୋଭିଲା ॥ ୬ ॥

ମୋତି ଚୂଡ଼ି ବାଲୀ ମଣିବନ୍ଧରେ ଶୋଭିଲା,
ଚରଣୁ ହଂସକ ବେନି ବେଗେ ଦୂର କଲା ।

ଛୁଟର ରୁଚି ବସନ ଅଙ୍ଗେ ପରିଧାଣ,
ପ୍ରିୟ ସଖୀ କର ଧରି କଲେକ ଗମନ ॥ ୭ ॥

ଲୀଳା ମାତ୍ର ଗତିରେ ଜିଣିଲା ଗଜରାଜ,
ଅଗ୍ରେ ଅଣି ଅଣି ହୋଇଅଛି ମୀନଧ୍ୱଜ ।

କୃଷ୍ଣ ଦରଶନରେ ହୋଇଛନ୍ତି ତତପର,
ଦେଖିଲା ଗଗନ ମଣ୍ଡି ଅଛି କଳାକର ॥ ୮ ॥

ମଧୁରେ କହଇ ପ୍ରିୟ ସଖୀକି ବଚନ,
ଦେଖ ସଖୀ ଶୋଭାକର ଶଶିକର ମନ ।

ସୂଚକ ହୋଇଛନ୍ତି କି ଏ ଧବ ଅଭିସାର,
ଶଙ୍ଖରେକ ଯେନଅଛି ଘନ ସାର ଚୂର ॥ ୯ ॥

କରେ ଏ ଶଶାଙ୍କ ସବୁ ମାନସ ମୋହିଲା,
କମଳ ଅଛି ତୂରି ବିରସ ହୋଇଲେ ।

ପ୍ରକାଶ ହୋଇଲେ ଏଣେ କୁମୁଦ କାନନ
ଦେଖନ୍ତେ ବିଯୋଗୀ ଜନ ହୋଇବେ ନିଧନ ॥ ୧୦ ॥

ସୁଧା ଦାନେ ଚକୋରଙ୍କ କରନ୍ତି ଆନନ୍ଦ,
ଚକ୍ରବାକୀ ମିଥୁନରେ ବାନ୍ଧିଲା ଏ ମନ୍ଦ ।

ଦରଶନେ ପ୍ରମୋଦ କଲୁଲା ପାରାବାର,
ନିଶାନାଥ ମାନ ତମ କଲା ଏହୁ ଦୂର ॥ ୧୧ ॥

ଦେଖରେ ସଜନୀ ଏ ବିବିଧ ପୁଷ୍ପକୁଞ୍ଜ,
ମଞ୍ଜୁ କୁଜୁ ଇନ୍ତି ମତ୍ତ ମଧୁକର ପୁଞ୍ଜ ।

ସହିଆଯା ନ ହୋଇଛି ମକରନ୍ଦ ଝରଇ,
ଲୋଭି ଭ୍ରମୁଛନ୍ତି ମଧୁ ଲିହି ତହିଁପରେ ॥ ୧୨ ॥

ଏଥନେ ପ୍ରବେଶ ହେଲେ କାଳିନ୍ଦୀର ତୀର,
ଦେଖିଲେ ଯମୁନା ନୀର ଅତି ମନୋହର
ତରଙ୍ଗରେ ରୁଚିର ଫେନିଳ ହେଲ ଶୁଣ,
ମତ୍ତେ ବିହରନ୍ତି ନାନା ପକ୍ଷୀ ପତ୍ରି ପୁଣ ॥ ୧୩ ॥

କେହୁ ଜଳେ ବୁଡନ୍ତି କେ କରନ୍ତି ଭ୍ରମଣ,
ପରସ୍ପରେ କେହୁ ଚଞ୍ଚୁଁ ଭରୁଛନ୍ତି ରଣ ।
କେବଣ ରାଜ ମରାଳ ହୋଇ ମଦଭର,
ନ ଭୁଞ୍ଜି ମୃଣାଳ ନବ ପ୍ରିୟା ସୁଖ ଭର ॥ ୧୪ ॥

କ୍ରୀଡ଼ା କରେ କେବଣ ବିହଙ୍ଗ ଭୃଙ୍ଗ ଭାଗେ,
କେହୁ ପ୍ରିୟ ସଖୀ ସେନ ବିହରନ୍ତି କୂଳେ ।
ମତ୍ତ କାରଣ୍ଡବ ଧ୍ୱନି ଶୁଭଇ ପ୍ରଚଣ୍ଡ,
ପୁଟି ଲୋଟୁଛନ୍ତି ତଟେଦଶେ ତରୁଷଣ୍ଡ ॥ ୧୫ ॥

କୁମୁଦଙ୍କ ପ୍ରିୟକରେ ଲଗନ୍ତି ମୁଦିତ,
ଦେଖି ସପତଣି ପଦ ମୁନ ପଣ ନତ ।
ଫୁଲ ଇନ୍ଦିବର ଗନ୍ଧ ମକରନ୍ଦ ଗ୍ରେର,
ବନରାଜି କେଳି ସାଜି ବହଇ ସମୀର ॥ ୧୬ ॥

ଏସନ ବଚନ ସୁନ୍ତା ଦେଖି ଚନ୍ଦ୍ରାନନା,
ବୃନ୍ଦାବନେ ମିଳିଲେ ସେ ସହଚରୀ ସେନା ।
ଦେଖନ୍ତେ ସେ ତରୁଣ ଅଙ୍ଗନା ରୁଚିର,
ପ୍ରକଟେ ହେବ ପଡ଼ଇ ସୁଧାକର କର ॥ ୧୭ ॥

ଛନ୍ଦଶ୍ରୀପ୍ରିୟା ଛଳେ କି ତା ଚକୋର ଖାଇନ୍ତି,
ନୀଳମଣି ମୋତି ରବ ଚଳ ରଞ୍ଜୁ ଅଛି ।
ପଗରେ ପୂର୍ଣ ଦଶଇ ବନ୍ଧୁର ସୁନ୍ଦର,
କି ସେ ଭୂମି ଅଷ୍ଟରମ୍ଭେ ଭୂଷଣେ ସୁନ୍ଦର ॥ ୧୮ ॥

କେଉଁ ଠାବରେ ପୁଷ୍ପ ପୁଟନ୍ତି ଅପାର,
ମକରନ୍ଦ ଲୁବ୍‌ଧେ ତହିଁ ବୁଲେ ମଧୁକର ।
କେବଣ ଦ୍ରୁମରେ ଲତା ହୋଇଛନ୍ତି ବେଷ୍ଟିତ,
ଅନଙ୍ଗରେ କେଳିଗୃହ ପ୍ରାୟେକ ଶୋଭନ୍ତ ॥ ୧୯ ॥

ଫୁଟିଛନ୍ତି ବିବିଧ କୁସୁମ ପୁଗ ପୁଗ,
କୁରଙ୍ଗ କସ୍ତୁରୀ ତହିଁ କରୁଛନ୍ତି ରଙ୍ଗ ।
ଯୂଥ ଯୂଥ ହୋଇ ଯେ ଚରନ୍ତି ମୃଗଗଣ,
ଦେଖିଣ ଚଞ୍ଚଳ କରେ ଯୋଗୀ ଜନ ମନ ॥ ୨୦ ॥

ଏମନ୍ତେ କହଇ ରାଧା ସଖୀକି ଉତ୍ତର,
କେଉଁଠାରେ ଅଛନ୍ତି ସେ ପ୍ରାଣର ଈଶ୍ୱର ।
ବେଗେ ଚାଲ ତହିଁକି ଗୋ ମିଳାରେ ସଜଣ,
ଅତ୍ୟନ୍ତ ଦୁଃସହ ହେଲା ବିରହ ଯାମିଣ ॥ ୨୧ ॥

ଏସନ ଶୁଣିଣ ଦୂତୀ କହେ ହୃଦ ହସି,
ଯହିଁଛନ୍ତି ପ୍ରାଣେଶ୍ୱର ତହିଁ ହେଲୁ ଆସି ।
ଏଠାରେ ତୁ ଦଣ୍ଡେକ ଗୋ କର ତ ବିଶ୍ରାମ,
ମୁଁ ଜଣାଇଁ ଆସିବଇଁ କୃଷ୍ଣ ସନ୍ନିଧାନ ॥ ୨୨ ॥

ଏସନ କହିଣ ସେହୁ ଚଳିଲା ସୁନ୍ଦରୀ,
ଦେଖିଲା ବଂଶୀ ତଳେ ବସେ ନରହରି ।
ଦୂତୀ ପ୍ରଣମିତ ହୋଇ କହଇ ଉତ୍ତର,
ଆଣିଲି ସୁକେଶୀ ତାରେ ଭୋଗ କର ॥ ୨୩ ॥

ଏମନ ଶୁଣିଣ ସେ ଗୋ କୃଷ୍ଣ ଶିରୋମଣି,
କହନ୍ତି କୋମଳେ ଧରି ସହଚରୀ ପାଣି ।
କାହିଁ ଥୁଇ ଅଇଲୁ ତୁ ପ୍ରାଣର ଈଶ୍ୱରୀ,
ମୁହିଁ ଯେ ଗୃହକ ପକ୍ଷୀ ସେହୁ ନବ ବାରି ॥ ୨୪ ॥

ଅବିଳମ୍ବେ ନୟନ ଗୋଚର ମୋରେ କର,
ତା ମୁଖ ଚନ୍ଦ୍ର ଚାହେଁ ମୋ ମାନସ ଚକୋର
ତାର ଦରଶନ ବିନୁ ପିଶୁନ ମଦନ,
ଅବିରତ ବନ୍ଧନ ଯେ କରୁଅଛି ମୋ ମନ ॥ ୨୫ ॥

ଏପନ ଶୁଣି ସଭୟେ ଚଳିଲ୍ ସୁମୁଖୀ,
ଦେଖିଲା ସେ ଧ୍ୟାନପର ସୁଧାକର ମୁଖୀ ।
କେତେବେଳେ ଆସିବ ସେ ମୋର ପ୍ରାଣ ସଖୀ,
ସେନେହେଁ କ ଭେଟାଇ ପାରିବ ପଦ୍ମମୁଖୀ ॥ ୨୬ ॥

ଶ୍ରୀକୃଷ୍ଣ ସନ୍ନିଧିଁ ସେହୁ ସହଚରୀ ଚଳ୍,
ବୃଷଭାନୁ ନନ୍ଦିନୀ ଶ୍ରୀମୁଖରେ ଜଣାଇଲା ।
କହଇ କୋମଳ କରି କୋମଳାଙ୍ଗୀ ପାଣ,
କରନ୍ତୁ ଗୋକୁଳ ମଣି ତୋରେ ପ୍ରତି ଆଶ ॥ ୨୭ ॥

ଉଠ ଗୋ ସୁନ୍ଦରୀ ବେଗେ କର ତୋ ଗମନ,
ଅନଙ୍ଗ ମୁଖରୁଁ କୃଷ୍ଣ ରକ୍ଷସି ବଦନ ।
ଏମନ୍ତେ କହିଣ ସେହୁ ଯେନ ଚନ୍ଦ୍ରାବଳୀ,
ପ୍ରବେଶ ହୋଇଲେ ଯହିଁ ଛନ୍ତି ବନମାଳୀ ॥ ୨୮ ॥

ଦୂରହୁଁ ଦେଖିଲେ ହରି ଆସୁଛି ସୁନ୍ଦରୀ,
ଯେ ଲାଗି ନିସ୍ତାର ହେଉଛନ୍ତି ବସୁନ୍ଧରୀ ।
ମନ୍ଦ ମନ୍ଦ ହସାଇଣ ଆସଇ ରମାବର,
ଦେଖି କୃଷ୍ଣ ଅଙ୍ଗରେ ପିଡ଼ିଲା ପଞ୍ଚଶର ॥ ୨୯ ॥

ନଚଳଇ ବେଗେ ପାଦ ଗମନ ମନ୍ଥର,
ପୁଲକିତ କଳେବର ବଚନ ଗଦ୍ଗଦ ।
ସ୍ୱେଦଯୁତ ଭାଳିରୁ ଚଳିଲା ଟିପି ବରଣୀ,
ସୁମଣ୍ଡିତ କରିଛି ଜାନୁ ଦେଶରେ ଲଳସୀ ॥ ୩୦ ॥

କର କମଳରେ ଧରି ଚନ୍ଦ୍ରହାସୀ କର,
ବସାଇଲେ ନେଇ ସଦ୍ୟ ଜାନୁର ଉପର ।
ଆଲବ୍‌ଧରେ ଚିବୁକ ଯେ ଧରଣ ଚୁମ୍ବନ୍ତି,
ପୁନଃପୁନ ଅଧରୁଁ ଯେ ଅମୀୟ ପିବନ୍ତି ।। ୩୧ ।।

ନାନା କେଳି ବିନୋଦରେ କଲେ ରତି ରଙ୍ଗ,
ଦେଖି କାର୍ମୁକ ପକାଇ ଲଜ୍ଜିତ ଅନଙ୍ଗ ।
ସୁବେଶ କରନ୍ତି କୃଷ୍ଣ ଚନ୍ଦ୍ରାବଳୀ ଯେଣ,
ସୁଧାକରରେ ଶୋଭିତ ଦିଶଇ ଅବସ୍ଥା ।। ୩୨ ।।

ରାଧାକୃଷ୍ଣ କଥା କେତେ କହିବେ ସୁଜନ,
ଯହିଁ ଅନ୍ତ ନ ପାଇଣ ତନ୍ତ୍ର ବିଲୋଚନ,
ସହସ୍ର ମୁଖରେ ଶେଷ ନ ପାରନ୍ତି କହି,
ଚତୁର୍ମୁଖେ ଯାହା ଯେ ଚିନ୍ତଣ ନନ୍ତ୍ରି ବହି ।। ୩୩ ।।

ଶ୍ରୀକୃଷ୍ଣର ଲୀଳା ବୋଲି ଏ ଗୀତର ନାମ,
କହିବାକୁ ମଧୁର ଶ୍ରୁତିକି ଅଭିରାମ ।
ଶୁଣି ବୁଧ ଜନେ ମୋର ନ ଧରିବ ଦୋଷ,
ଭଣେ ନୃପ ଧନଞ୍ଜୟ ଶ୍ରୀକୃଷ୍ଣର ଦାସ ।। ୩୪ ।।



## ଲେଖକ ଓ ବିଭିନ୍ନ ଗ୍ରନ୍ଥର ସଂଗ୍ରାହକ—ଶ୍ରୀ ମାଗୁଣି ଦାଶ

ଗୋପବନ୍ଧୁ ସ୍ମୃତି—(କବିତା)
ପ୍ରେମର ପରିଣାମ—(ଉପନ୍ୟାସ)
ଭଞ୍ଜବଂଶାନୁଚରିତ (ତାଳପତ୍ର ପୋଥିରୁ ସଂଗୃହିତ, ୨ୟ ସଂସ୍କରଣ)
ଭଞ୍ଜବଂଶ ଓ ଗୁମସର ବିଦ୍ରୋହ—(ତାଳପତ୍ରରୁ ସଂଗୃହିତ)
ଭଞ୍ଜବଂଶାବଳୀ—(ଗଦ୍ୟ) (ତାଳପତ୍ରରୁ ସଂଗୃହିତ)
ରସିକାନୁରକ୍ତା—(ଉପେନ୍ଦ୍ରଭଞ୍ଜ) ସଂଗ୍ରହ
ଜଏଲର ଭାବନା—(ଜେଲ ଭିତରେ ଲେଖା କବିତା)
ଶ୍ରୀ ରଘୁନାଥ ଜଣାଣ—
(ଭକ୍ତକବି ଭକ୍ତଚରଣ ଦାସ ବିରଚିତ ତାଳପତ୍ର ପୋଥିରୁ ସଂଗୃହିତ)
ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣିକା
ଉତ୍କଳବାଣୀର କନ୍ଧ ସଂସ୍କୃତି—(ରେଡ଼ିଓରେ ପ୍ରସାରିତ ପ୍ରବନ୍ଧ)

## ପ୍ରକାଶ ଅପେକ୍ଷାରେ :—

ଘୁମୁସର ଇତିହାସ
ଉପେନ୍ଦ୍ରଭଞ୍ଜ ପରିକ୍ରମା
ଚୌପଦୀ ଭୂଷଣ—(ତାଳପତ୍ର ପୋଥିରୁ ସଂଗୃହିତ ଧନଞ୍ଜୟ ଭଞ୍ଜ ବିରଚିତ)
ବୋଲ ପୋଇ—
(ତାଳପତ୍ର ପୋଥିରୁ ସଂଗୃହିତ ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ ରଚନା)
କବି ଓ ସୃଷ୍ଟି—(ଆଲୋଚନା ମୂଳକ ପ୍ରବନ୍ଧ)
ଆମ ମଠର ଆମ ଦେବତା
ଓଡ଼ିଆ ସାହିତ୍ୟକୁ ଚଡ଼ିଆଳର ଦାନ
ଓଡ଼ିଆ ସାହିତ୍ୟକୁ ଘୁମୁସର ରାଜବଂଶର ଦାନ
ଉପେନ୍ଦ୍ରଭଞ୍ଜ (ଜୀବନୀ)
ଭଞ୍ଜ କାହାଣୀ—(ଭଞ୍ଜ ରାଜତ୍ୱ ସମୟର କେତୋଟି କିମ୍ବଦନ୍ତୀ)

**ଅନୁସନ୍ଧାନ କରନ୍ତୁ :**

**କବିସମ୍ରାଟ ବୁକ୍ ଷ୍ଟୋର**

**ଭଞ୍ଜନଗର (ଗଞ୍ଜାମ)**

**ଏବଂ**

**କଟକ ଓ ବ୍ରହ୍ମପୁରର ବଡ଼ ବଡ଼ ବହି ଦୋକାନ**